# ଅଦ୍‌ଭୁତ

# ସେ

# ଅପରାଧୀ

ଲେଖିକା— ଶ୍ରୀମତୀ ଚନ୍ଦ୍ରମୁଖୀ ମିଶ୍ର

ମୂଲ୍ୟ—ଟ [illegible]

Digitized by srujanika@gmail.com

ଶ୍ରୀମତୀ ଚନ୍ଦ୍ରଶ୍ରୀ ମିଶ୍ରଙ୍କ ଲିଖିତ "ଅଦ୍ଭୁତ ସେ ଅପରାଧୀ" ପାଣ୍ଡୁଲିପିଟି ପଢ଼ି ଅତ୍ୟନ୍ତ ଆନନ୍ଦିତ ହେଲି । ଏଥିପୂର୍ବରୁ ଶ୍ରୀମତୀ ମିଶ୍ରଙ୍କ ଲିଖିତ ଅନ୍ୟ ଏକ ଡ଼ିଟେକ୍‌ଟିଭ ଉପନ୍ୟାସ 'ଛଦ୍ମବେଶୀ' ପଢ଼ିବାର ସୁଯୋଗ ମିଳିଥିଲା । ଶ୍ରୀମତୀ ମିଶ୍ରଙ୍କର ଏଇ ଉପନ୍ୟାସଟି ଏକ ବୈଜ୍ଞାନିକ ତଥା ଡ଼ିଟେକ୍‌ଟିଭ୍ ବିଷୟବସ୍ତୁ ଉପରେ ରଚିତ । ତେଣୁ ଏହାକୁ ବୈଜ୍ଞାନିକ ତଥ୍ୟ ଉପରେ ପ୍ରତିଷ୍ଠିତ ରୋମାଞ୍ଚକର ଡିଟେକ୍‌ଟିଭ୍ ଉପନ୍ୟାସ କହିଲେ ଅତ୍ୟୁକ୍ତି ହେବନି । ଉପନ୍ୟାସର ଲେଖା ଶୈଳୀ ବେଶ୍ ହୃଦୟଗ୍ରାହୀ, ଭାଷା ବେଶ୍ ତରଳ ଓ ଚଳ ଚଳ, ଓଡ଼ିଶାର ସୁଧୀ ପାଠକ ପାଠିକା-ମାନଙ୍କ ଠାରେ ଆଦୃତ ହେବ ବୋଲି ଆଶା । ଉପନ୍ୟାସର ନାୟକ ବୈଜ୍ଞାନିକ ମିଶ୍ରଙ୍କୁ ଶ୍ରୀମତୀ ମିଶ୍ର ଯେଉଁଭଳି ଭାବରେ ଚିତ୍ରି ତୋଳିଛନ୍ତି, ତାହା ବେଶ୍ ଆଦର୍ଶ ହୋଇଛି । ଶ୍ରୀମତୀ ମିଶ୍ରଙ୍କ କଳ୍ପନାରେ ରୂପପାଇଥିବା ଡେଲ୍‌ଟା ରଶ୍ମି ଓ ଏହାର ପ୍ରକୃତ ଉକ୍ତ ବୈଜ୍ଞାନିକ ଶିକ୍ଷାଥିବା ମସ୍ତିଷ୍କରୁ ବାହାରିଥିଲେ ଯେମିତି ହୋଇଥାନ୍ତା, ସେମିତି ହୋଇଛି । ମୋଟା ମୋଟି କହିବାକୁଗଲେ ଲେଖିକାଙ୍କ ଏହି ଉପନ୍ୟାସଟି ତାଙ୍କ ଲିଖିତ ପ୍ରଥମ ଉପନ୍ୟାସ

Digitized by srujanika@gmail.com

ଠାରୁ ଯଥେଷ୍ଟ ଭଲ ଓ ସୁଖ ପାଠ୍ୟ ହୋଇଛି । ଆଶା ଏହା ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ବେଶ ଆଦୃତ ହେବ । ଶ୍ରୀମତୀ ମିଶ୍ର ଏଭଳି ଉପନ୍ୟାସ ଲେଖି ଓଡ଼ିଆ ସାହିତ୍ୟର ଶ୍ରୀ ବୃଦ୍ଧି କରନ୍ତୁ ଏତିକି ମାତ୍ର କାମନା । ଇତି ।

ଡକ୍ଟର:- **ଗୋକୁଳାନନ୍ଦ ମହାପାତ୍ର**

କଟକ

ତା ୧୧·୪-୭୧



Digitized by srujanika@gmail.com

ଆନନ୍ଦର କଥା, ସୁଲେଖିକା ଶ୍ରୀମତୀ ଚନ୍ଦ୍ରସ୍ମୀ ମିଶ୍ରଙ୍କର ଏହି ଦ୍ୱିତୀୟ ଉପନ୍ୟାସଟି ପ୍ରକାଶିତ ହେବାକୁ ଯାଉଛି । ଉପନ୍ୟାସଟିକୁ ପାଣ୍ଡୁଲିପି ଆକାରରେ ପଢ଼ିବାର ସୁଯୋଗ ମୁଁ ପାଇଥିଲି । ଏହାର କାହାଣୀ ମୋତେ ଏପରି ମୁଗ୍ଧ କରିଥିଲା ଯେ ମନେ ମନେ ଲେଖିକାଙ୍କର କଳ୍ପନା କୁଶଳତାକୁ ତାରିଫ୍ ନକରି ରହିପାରି ନଥିଲି । ପ୍ରକୃତରେ ଚମତ୍କାରିକ, ରୋମାଞ୍ଚକର କାହାଣୀହିଁ ଏହି ଉପନ୍ୟାସଟିର ମୁଖ୍ୟ ବିଶେଷତ୍ୱ । ଥରେ ପଢ଼ା ଆରମ୍ଭ କଲେ ଶେଷପୃଷ୍ଠାରେ ପହଞ୍ଚିବାର ଆଗ୍ରହ ଏଥିରେ ନିଶ୍ଚୟ ଅକ୍ଷୁର୍ଣ୍ଣ ରହିବ ।

ଏହାର ଆଉଗୋଟିଏ ବିଶେଷତ୍ୱ ହେଉଛି କାହାଣୀର ବୈଜ୍ଞାନିକ ଭିତ୍ତି । 'ଡକ୍ଟର ମିଶ୍ର' କିପରି ବିଜ୍ଞାନ ବଳରେ ଅଲୌକିକ ଭୂମିକାମାନ ଗ୍ରହଣ କରିଛନ୍ତି, ତାହାର ରୋମାଞ୍ଚକର ଅଥଚ ସମ୍ଭବପର ଚିତ୍ର ଏଥିରେ ଦିଆଯାଇ ଅଛି । ଓଡ଼ିଶାରେ ବିଜ୍ଞାନ ଆଧାରିତ ଉପନ୍ୟାସର ସଂଖ୍ୟା ଅତ୍ୟନ୍ତ କମ୍ । ଶ୍ରୀମତୀ ମିଶ୍ରଙ୍କର ଏ ଦିଗରେ ଉଦ୍ୟମ ନିଶ୍ଚିତ ଭାବେ ପ୍ରଶଂସାର୍ହ ।

ଶ୍ରୀମତୀ ମିଶ୍ରଙ୍କର ପ୍ରଥମ ଉପନ୍ୟାସ 'ଛଦ୍ମବେଶୀ' ଏଥି-ପୂର୍ବରୁ ପ୍ରକାଶିତ ହୋଇ ସାରିଛି ଏବଂ ପାଠକ ପାଠିକାମାନଙ୍କର ଆଦର ଲାଭ କରି ଅଛି । ସଂସାରର ଜଞ୍ଜାଳ ଗହନରେ

Digitized by srujanika@gmail.com

ବ୍ୟସ୍ତ ରହି ମଧ୍ୟ ସେ ଯେ ନିଜର ସାହିତ୍ୟ ଅନୁରାଗ ଅତୁଟ ରଖିପାରିଛନ୍ତି, ଏହା ତାଙ୍କର ମାର୍ଜିତ ପାରଂପରିକ ଅଭି-ରୁଚିର ପରିଚୟ ଦିଏ ।

ଏକ ନୂତନ ଅଭିମୁଖ୍ୟ ନେଇ ରଚିତ ଏହି ଉପନ୍ୟାସଟି ପାଠକ ପାଠିକାଙ୍କ ନିକଟରେ ନିଶ୍ଚୟ ଆଦୃତ ହେବ, ଏ ଦୃଢ଼ ବିଶ୍ୱାସ ମୋର ରହିଛି ।

ଅଧ୍ୟାପକ **ଧନେଶ୍ୱର ମହାପାତ୍ର**

ତା ୨୩-୫-୭୧

Digitized by srujanika@gmail.com

ପଦେ —

ସମାଜର ପ୍ରତି ସ୍ତରେ ସ୍ତରେ ଦୁର୍ନୀତି ଅନୀତିର ଢେଉ । ସେ ଢେଉର ପୀଡ଼ନରେ ଜର୍ଜରିତ ଏ ସମାଜର ପ୍ରତ୍ୟେକ ବ୍ୟକ୍ତି । କିନ୍ତୁ ସମସ୍ତେ ନୀରବ । କେବଳ ଆତ୍ମ-ଦହନର ଜ୍ୱଳନ ଭିତରେ ସମସ୍ତେ ସାଜିଛନ୍ତି ଏ ସବୁର ଜଣେ ଜଣେ ନୀରବ ଦର୍ଶକ । କାହିଁକି ? ଏ ପ୍ରଶ୍ନ ଉତ୍ପୀଡ଼ିତ ମଣିଷ ମନରେ ବିପ୍ଳବର ହୁଂକାର ତୋଳେ । ତାର ପ୍ରତି ରକ୍ତ କଣାରେ ଉଦ୍‌ଭେଦ ଏ ବିଦ୍ରୋହାଗ୍ନିର ଶେଷହୀନ ଲେଲିହାନ ଶିଖା । ତେଣୁ ସେ ବିପ୍ଳବୀ ସାଜେ । ବିଦ୍ରୋହ କରେ ଏ ସମାଜ ବିରୁଦ୍ଧରେ । କିନ୍ତୁ ଦୁନିଆଁ ଆଖିରେ ସେ ହୁଏ ଅପରାଧୀ ! ଅଇନର ଶୃଙ୍ଖଳ-ତାକୁ ବନ୍ଧ ଦେବାକୁ ଶତଚେଷ୍ଟା କରେ । କିନ୍ତୁ ପାରେନି ? କାରଣ "ଅଦ୍ଭୁତ ସେ ଅପରାଧୀ" । ବିଜ୍ଞାନର ଅସୀମ ଶକ୍ତି ନେଇ ସେ ବଳୀୟାନ, ବୈଜ୍ଞାନିକ ବୁଦ୍ଧିମତ୍ତା ତାକୁ କରିଛି ଅଜେୟ, ଅପରାଜେୟ......

'ଅଦ୍ଭୁତ ସେ ଅପରାଧୀ'ର ଜୀବନ ଇତିହାସ ଦୀର୍ଘ ପାଞ୍ଚ ବର୍ଷର ଘାତ ସଂଘାତର ଇତିହାସ । ସେ ଏଇ ପାଞ୍ଚବର୍ଷ ଭିତରେ ନିଜର ଆତ୍ମପ୍ରକାଶ ପାଇଁ ଅନେକ ପ୍ରକାଶକଙ୍କ ନିକଟରେ ମାସ, ମାସ, ବର୍ଷ ବର୍ଷ ଧରି ଅପେକ୍ଷା କରିଛି— ଶେଷରେ ମୋ ନିକଟକୁ ଫେରିଛି ସେଇ ପାଣ୍ଡୁଲିପି ହୋଇ । କିନ୍ତୁ ଧୈର୍ଯ୍ୟହରା ହୋଇନି ସେ । ଶେଷରେ ପତିତପାବନଙ୍କର ଆଶୀର୍ବାଦ ନେଇ ଆତ୍ମ-ପ୍ରକାଶ କରିଛି ଏ ତୀର୍ଥଭୂଇଁ ପୃଷ୍ଠରେ ।

Digitized by srujanika@gmail.com

ସଂସାରର କର୍ମମୟ ଭିତରେ ମଧ୍ୟ ମୁଁ କଳ୍ପନା ରାଇଜରେ ଘୂରି ବୁଲେ । ମନ ଚଞ୍ଚଳ ହୁଏ । ଇଚ୍ଛା ହୁଏ ସେ କଳ୍ପନା ସବୁକୁ ଲେଖନୀ ବଳରେ ରୂପ ଦେବି । କିନ୍ତୁ ପାରେନା ସବୁବେଳେ । ସଂସାର ଜଂଜାଳ ମୋତେ ସ୍ଥବିର କରେ, ମନରେ ତୋଳେ ଅବସାଦପୂର୍ଣ୍ଣ ଝଂକାର । ମନରୁ ଭାବନା ସବୁ ହଜି ହଜି ଯାଆନ୍ତି । ଲେଖନୀ ହୁଏ ଶିଥିଳ । ମନ ଆକାଶରେ ଘୋଟିଆସେ ନିରାଶା, ହତାଶାର କଳାମେଘ । ଠିକ୍ ସେତିକିବେଳେ ଜଣେ ଆସି ମୋତେ ଉତ୍ସାହ ଦିଅନ୍ତି । ଉତ୍ସାହ ମନରେ ପ୍ରେରଣା ଦିଅନ୍ତି ଆଗକୁ ଆଗେଇ ଯିବାକୁ । ସେ ହେଉଛନ୍ତି, ମୋ ଜୀବନର ଚିର ପଥ ପ୍ରଦର୍ଶକ ଡକ୍ଟର ପତିତପାବନ ମିଶ୍ର । ତାଙ୍କର ସ୍ନେହ, ସହାନୁଭୂତି, ଉତ୍ସାହ, ପ୍ରେରଣାକୁ ନେଇ, ଏ ବୈଜ୍ଞାନିକ ତଥ୍ୟ ସମ୍ବଳିତ ଡିଟେକ୍ଟିଭ୍ ଉପନ୍ୟାସଟିକୁ ଲେଖିବାକୁ ସମର୍ଥ ହୋଇଛି । ଯାହାକିଛି ଲେଖିଛି ତାହା ପାଠକ ପାଠିକାଙ୍କ ମନରେ ଆନନ୍ଦର ଝଂକାର ତୋଳିବକି ନାହିଁ ମୁଁ ଜାଣେନା ।ଯଦି ତୋଳେ ତେବେ ମୋ ଶ୍ରମ ସାର୍ଥକ ହେବ ।

ଶେଷରେ—'ଅଦ୍ଭୁତ ସେ ଅପରାଧୀ'ର ସଫଳ ଆତ୍ମ-ପ୍ରକାଶ ପାଇଁ ଓଡ଼ିଶାର ସୁନାମଧନ୍ୟ ବୈଜ୍ଞାନିକ ତଥା ସାହିତ୍ୟିକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର ଓ ଅଧ୍ୟାପକ ଧନେଶ୍ୱର ମହାପାତ୍ରଙ୍କ ନିକଟରେ ମୁଁ ଚିର କୃତଜ୍ଞ । ମୁଦ୍ରଣ ତ୍ରୁଟିଯୋଗୁଁ ଅନେକ କିଛି ଭୁଲ୍ ରହିଯାଇ ପାରିଥାଏ । ନିଜର ସହନ-ଶୀଳତା ନେଇ ଏଥିପାଇଁ କ୍ଷମାଦେବେ ବୋଲି ମୋର ଆଶା ।

। ଇତି ।

**ଲେଖିକା**

Digitized by srujanika@gmail.com

ଚୈତ୍ର ମାସ । ସଂଜ ନଇଁ ଆସିଲାଣି । ସେ ଦିନ ତିଥି ଥାଏ ଦ୍ୱାଦଶୀ, ଆଉ ଅଳ୍ପ ସମୟ ପରେ ଦ୍ୱାଦଶୀର ଚନ୍ଦ୍ର ଆକାଶରେ ଜ୍ୟୋତ୍ସ୍ନା ଖେଳାଇଦେବ । ରେଭେନ୍ସା କଲେଜର ପାଖରେ ଥିବା ଆମ୍ବ ଗଛମାନଙ୍କରୁ ଭାସି ଆସୁଛି ଆମ୍ବକଷିର ମନ ମତାଣିଆ ମହକ । ସକାଳ ସାତଟାରୁ ସଂଧ୍ୟା ପାଞ୍ଚଟା ପର୍ଯ୍ୟନ୍ତ କଲେଜଟି ଛାତ୍ର ଛାତ୍ରୀଙ୍କ କୋଳାହଳରେ ମୁଖରିତ ହୋଇ ଉଠେ । କିନ୍ତୁ ସଂଧ୍ୟା ପରେ ନିର୍ଜନ ସେ କଲେଜ । କେବଳ ବିଜୁଳିବତ୍ତି ଆଲୋକ ଛଡ଼ା ଆଉ ବିଶେଷ କେହି ନଥାନ୍ତି ।

ସେହି କଲେଜର ଉପର ମହଲା । ପଦାର୍ଥ ବିଜ୍ଞାନର ରିସର୍ଚ୍ଚ ରୁମ୍ ସାମନା ସାମନି ଦୁଇଟି ଚେୟାରରେ ଦୁଇଜଣ ବସିଥାନ୍ତି । ମଝିରେ ଥିବା ଟେବୁଲ ଉପରେ ଦୁଇ କପ୍ କଫି

ଥୁଆ ହୋଇଥାଏ । ଘରଟିରେ ନୀରବତା ବିରାଜ ମାନ । ଦୁଇଜଣ
ଯାକ ଯେପରି ଚିନ୍ତାମଗ୍ନ । ନୀରବତା ଭଙ୍ଗ କରି ପୁରୁଷ ଜଣକ
କଫି କପଟି ହାତରେ ଉଠାଇ ନେଇ ନେଇ କହିଲେ "ସ୍ୱପ୍ନା,
ତୁମେ ଆଜି ବହୁତ ଚିନ୍ତିତ ଦେଖାଯାଉଛ ? ସବୁଦିନ ପରିତ
ଅଜି ତୁମର ପଢ଼ିବାରେ ଉତ୍ସାହ ଦେଖୁନି, ମୁହଁଟା ଯେ ନିହାତି
ଶୁଖିଲା ଦିଶୁଛି, କଣ ହୋଇଛି ତୁମର ?"

ସ୍ୱପ୍ନାଦେବୀ ଇତସ୍ତତ ହୋଇଯାଇ କହିଲେ, "ନାଁ ସାର୍,
ମୋର ସେମିତି ତ କିଛି ହୋଇନି । ମୁଣ୍ଡଟା ସାମାନ୍ୟ ବିନ୍ଧୁଛି ।"

ଅଧ୍ୟାପକ ଉତ୍କଳ ମିଶ୍ର ଖାଲି କପ୍‌ଟିକୁ ଟେବୁଲ
ଉପରେ ରଖି ଅଳ୍ପ ହସି କହିଲେ, "କଫିଟା ତ ପୁରା ସର୍‌ବତ
କରି ଦେଲଣି, ଅଗ ଖାଇନାଅ । ତୁମେ ବହୁତ ମିଛ କହି
ଶିଖିଲଣି । ମୁଣ୍ଡ ବିନ୍ଧୁଥିଲେ ତୁମେ ମୋ ପ୍ରଶ୍ନରେ ଚମକି ଉଠି
ନଥାନ୍ତ, କି ଏପରି ଅନ୍ୟମନସ୍କ ହୋଇ ନଥାନ୍ତ । ନିଶ୍ଚୟ ମନରେ
କିଛି ଭାବୁଛ । ନୁହେଁ ? କଣ ଏତେ ଚିନ୍ତା କରୁଛ ? କହିବାରେ
କିଛି ଆପତ୍ତି ଅଛି କି ?"

ସ୍ୱପ୍ନା ଦେବୀ ଉତ୍କଳ ମିଶ୍ରଙ୍କ କଥା ଶୁଣି ଅପ୍ରସ୍ତୁତ
ହୋଇଗଲେ । ଦୁଇମିନିଟ୍ ନୀରବ ରହିବା ପରେ ମୁହଁ ତଳକୁ
କରି କହିଲେ "ଆପଣଙ୍କୁ କହିବି ବୋଲି ପ୍ରତିଦିନ ଭାବୁଛି, କିନ୍ତୁ
କହି ପାରୁନି, ଆପଣଙ୍କ ପାଖରେ ବେଶୀ ସମୟ ରହି ପଢ଼ା ପଢ଼ି
କରୁଛି ବୋଲି ସାଙ୍ଗମାନେ ହେଟାଇ ଶିଖାଇ ଅନେକ କଥା
କହୁଛନ୍ତି । ଏପରିକି ମୋ ଠାରୁ ଦୁଇ, ତିନି ବର୍ଷ ଲେଖାଏଁ

Digitized by srujanika@gmail.com

ଯେଉଁମାନେ ଜନ୍ମଅଛ, ସେମାନେ ମଧ୍ୟ ପଦେ ଅଧେ କହିବାକୁ ଛାଡ଼ନାହାଁନ୍ତି । ଆଜ ଗୁରୁବାରବେଳେ ମୁଁ ଉପରକୁ ଆସିଲାବେଳେ ଦୁଇଜଣ ଝିଅ ମୋତେ ଦେଖେଇ ଦେଖେଇ ଅନେକ କଥା କହିଲେ । ଏମିତି ଖରାପ କଥା ଶୁଣି ମୋ ମନଟା ଖରାପ ଲାଗୁଛି । ଏବେ ପାଠ ପଢ଼ିଲେ ଉତ୍ସାହ ଦେବାତ ଦୂରର କଥା ଓଲଟି ଅପମାନ............"

"ମୋତେ ହସେଇଲ ସ୍ୱପ୍ନା, ତୁମେ ଯଦି ଏମିତି ଲୋକଙ୍କ କଥା ଶୁଣିବସିବ, ତାହାହେଲେ ତୁମେ ତୁମ ଜୀବନରେ କିଛି କରି ପାରିବନି । ଲୋକେ ତ କିଛି କରି ନାହାଁନ୍ତି, ଆହୁରି ବେଶୀ କହିବେ । ତୁମେ ଜୀବନରେ ଉନ୍ନତି ପଥରେ ଅଗେଇ ଯିବା ବେଳେ ଯଦି ଏହିପରି ଗ୍ଲେଟ ଗ୍ଲେଟ କଥା ଶୁଣି ଦବି ଯିବ, ତେବେ ତୁମେ କିଛି କରି ପାରିବନି । ଲୋକେ କହୁଛନ୍ତି, ତାଙ୍କୁ କହିବାକୁ ଦିଅ । କିଛିଦିନ କହିବା ପରେ ଯେତେବେଳେ ଦେଖିବେ, ତୁମେ ତାଙ୍କ କଥା ଶୁଣିଲନି, ସେତେବେଳେ ଆପେ ଆପେ ତାଙ୍କ ପାଟି ବନ୍ଦ ହୋଇଯିବ । ତୁମର ଯଦି ଆତ୍ମବିଶ୍ୱାସ ଅଛି, ତେବେ ତୁମେ କାହା କଥାରେ କାନ ନଦେଇ ନିଜ ପଢ଼ା ପଢ଼ିରେ ଲାଗିପଡ଼ ; ମନୁଷ୍ୟର ଅସଲ ଶକ୍ତି ହେଉଛି ଆତ୍ମ ବିଶ୍ୱାସ ।"

"ସାର, ମୋ ଲାଗି ମୁଁ ବେଶୀ ଭାବୁନି । କିନ୍ତୁ ଯଦି ମୋ ନେଇ ଆପଣଙ୍କ ଘରେ ସମସ୍ତେ ଏପରି ଶୁଣନ୍ତି, ସେମାନେ କଣ ଭାବିବେ ? ଶେଷରେ ଆପଣଙ୍କ ସାଂସାରିକ ଜୀବନରେ ଅଶାନ୍ତି

Digitized by srujanika@gmail.com

ଘଟିବ । ସେଥିପାଇଁ ମୁଁ ଭାବୁଛି, ଅଯଥାରେ କାହିଁକି ମୋ ଲାଗି ଗୋଟିଏ ପରିବାର ରେ ଅଶାନ୍ତିର ଝଡ଼ ସୃଷ୍ଟି ହେବ ?''

''ସ୍ୱପ୍ନା, ମୋ ସଂସାର ପ୍ରତି ତୁମର ଭାରି ଦରଦ ଅଛି, ଦେଖୁଛି ! କିନ୍ତୁ ତୁମ ପ୍ରତି କେବେ କଣି ମୋର ଦୁର୍ବଳତା ଥିବା ଦେଖିଛ ?''

''ନାଁ ସାର୍, ଆପଣଙ୍କଠାରେ କେବେ ଦୁର୍ବଳତା ଦେଖିନି କି ମୁଁ ନିଜେ ମଧ୍ୟ ଦୁର୍ବଳ ନୁହେଁ । ମୋ ଦାୟିତ୍ୱ ଓ ଚରିତ୍ର ନେଇ ମୁଁ ବହୁତ ସଂଯତ ।''

''ତୁମେ ନିଜେ ଯଦି ଦୃଢ଼ ଅଛ ତେବେ ଅନ୍ୟମାନଙ୍କ କଥା ଶୁଣୁଛ କାହିଁକି ? ଆଜି ମଧ୍ୟ ଆଜିଠାରୁ ଏତିକି ଜାଣ ଯେ ମୁଁ ଅବିବାହିତ, ତେଣୁ ମୋ ସଂସାର ବିଷୟରେ ତୁମର ଆଉ ଚିନ୍ତା କରିବା ଦରକାର ନାହିଁ । ହଉ, ଛାଡ଼ ସେ ସବୁ କଥା । ଆଜି ସମୟଗୁଡ଼ାକ ଗପରେ ନଷ୍ଟ କରିଦେଲି । ବର୍ତ୍ତମାନ ଆଉ ପଢ଼ିବା ପାଇଁ ମନଟା ଭଲ ଲାଗିବନି । ଚାଲଯିବା ବାହାରେ ବୁଲି ଆସିବା'' ।

''ଆପଣ କୁଆଡ଼େ ବୁଲି ଯିବେ ଯାଆନ୍ତୁ, ମୁଁ ଘରକୁ ଯିବି ।''

''ହଉ ତାହାହେଲେ ଚାଲ, ତୁମକୁ ଘରେ ଛାଡ଼ିଦେଇ ମୁଁ ସେଇଆଡ଼େ ବୁଲି ଆସିବି ।'' ଋଷଭ ରୁମ୍‌ର କବାଟ ବନ୍ଦ

Digitized by srujanika@gmail.com

ବିର ଡ଼କ୍ଟର ମିଶ୍ର, ସ୍ୱପ୍ନାଦେବୀ କଲେଜ ପଢ଼ୁଆ ଭିଡ଼ଟରେ ଆଗେଇ ଚାଲିଲେ । ସେତେବେଳକୁ ଶୁକ୍ଳଦ୍ୱାଦଶୀର ଜ୍ୟୋତ୍ସ୍ନା ଚାରିଆଡ଼େ ବିଛୁରିତ ହୋଇ ପଡ଼ିଲାଣି । ଆଜି ସେ ଶୀତଳ ସ୍ପର୍ଶରେ ମହକ ଉଠୁଛି, ମଲ୍ଲୀ ଜୁଇ ରଜନୀଗନ୍ଧା ଫୁଲଗୁଡ଼ାକ ।

× × × × × ×

ସକାଳ ସାତଟା । ରାସ୍ତାରେ ବିଶେଷ ଲୋକ ଗହଳି ନାହିଁ । କଲେଜଟିରେ ଅଳ୍ପ କେତେ ଜଣ ନିଜ ପଢ଼ାପଢ଼ି ନେଇ ବ୍ୟସ୍ତ, ଚାରିଆଡ଼େ ଝାଉଁଳିଆ ଖରା ବିଛେଇ ହୋଇ ପଡ଼ୁଛି । ଶ୍ରେଷ୍ଠ ପିଲାମାନେ ଠିକ ଠିକ ବହି ନେଇ ପଢ଼ୁଛନ୍ତି । ପଦାର୍ଥ ବିଜ୍ଞାନର ରିସର୍ଚ୍ଚ ରୁମରେ ଅଧ୍ୟୟନ ରତ ଡକ୍ଟର ମିଶ୍ର ଓ ସ୍ୱପ୍ନା ଦେବୀ । ବାସ୍ତବିକ କର୍ମମୟ ଜୀବନରେ ଅବକାଶ ମିଳି ପାରେ ନାହିଁ । ଡକ୍ଟର ମିଶ୍ର, ସ୍ୱପ୍ନାଦେବୀ ଏ ଦୁଇଜଣ ନିଜ ପଢ଼ା ପଢ଼ି ନେଇ ଏତେ ବ୍ୟସ୍ତ ଯେ ଅନ୍ୟ କିଛି ଚିନ୍ତା କରିବା ପାଇଁ ଅବସର-ପାଆନ୍ତି ନାହିଁ ।

ଦୁଇ ଜଣଙ୍କ ହାତରେ ବହି । ପଢ଼ାରେ ମଜ୍ଜି ଯାଇଛନ୍ତି ସେମାନେ । ଡକ୍ଟର ମିଶ୍ର ବହିରୁ ଉଠାଇ ମୁହଁ ଟେକି, ବହିଟିକୁ ବନ୍ଦ କରି ହାତରେ ଧରି କହିଲେ "ସ୍ୱପ୍ନା, ଚାଲ ଯିବା କ୍ୟାଣ୍ଟିନରେ କଫି ଖାଇ ଆସିବା ।"

Digitized by srujanika@gmail.com

ସ୍ୱପ୍ନାଦେବୀ ବହିଟିକୁ ବନ୍ଦ କରି ଟେବୁଲ ଉପରେ ରଖି କହିଲେ "ସାର୍, କ୍ୟାଣ୍ଟିନ୍‌କୁ କଫି ଖାଇବାକୁ ଗଲେ ବର୍ତ୍ତମାନ ଘଣ୍ଟାଏ ସମୟ ନଷ୍ଟ ହେବ । ମୁଁ ଏଠାରେ କଫି କରିବା ପାଇଁ ସମସ୍ତ ଜିନିଷ ରଖିଛି । ଦଶମିନିଟରେ କଫି ହୋଇଯିବ । ଅଯଥାରେ ସମୟ ନଷ୍ଟ କରି କାହିଁକି ବାହାରକୁ ଯିବା ?" ଏତିକି କହିସାରି ସ୍ୱପ୍ନାଦେବୀ ଉଠିଯାଇ ହିଟରରେ ପାଣି ଗରମ କଲେ ।

ଠାକୁର ମିଶ୍ର ହାତରେ ଧରିଥିବା ବହିଟିକୁ ଖୋଲି ଖୋଲି କହିଲେ, "ତୁମେ ତ ରିସର୍ଚ୍ଚ ତୁମ୍‌କୁ କେତେଦିନ ଧରି କଲଣି ?"

ସ୍ୱପ୍ନା ଦେବୀ କିଛି ନ କହି ଅଳ୍ପ ହସି ଦେଲେ । କଫି ତିଆରି କରି ଗୋଟିଏ କପ୍ ଠାକୁର ମିଶ୍ରଙ୍କ ହାତକୁ ବଢାଇ ଦେଇ ଆଉ ଗୋଟିଏ କପ୍ ନିଜେ ଧରିଲେ ।

ହାତରେ କଫି କପ୍‌ଟି ଧରି ପଚାରିଲେ —"ସ୍ୱପ୍ନା, ତୁମକୁ ମୁଁ ଯେଉଁ କାମଟି ଦେଇଥିଲି, ସେ କାମଟି କେତେଦୂର ଅଗ୍ରେଇଲା ?"

"ସାର୍, କାମଟି ବଡ଼ ମଜା ଲାଗୁଛି, କିନ୍ତୁ ଗୋଟାଏ ଜାଗାରେ ଟିକିଏ ଅସୁବିଧା ପଡ଼ୁଛି । ସେଇଟା ସମାଧାନ କରି ଦେଲା ପରି ଲାଗୁନି ।"

Digitized by srujanika@gmail.com

"ତାକୁ ଯେ କୌଣସି ଉପାୟ ଲଗାଇ ସମାଧାନ କରିବାକୁ ପଡ଼ିବ । ହୋଇ ପାରିବନି, ଏମିତି କିଛି କଥା ଦୁନିଆରେ ଅଛି ବୋଲି ମୋର ବିଶ୍ୱାସ ହୁଏନି । ନିଜେ ମନ ପ୍ରାଣ ଲଗେଇ ପରିଶ୍ରମ କଲେ ଯେତେ ଜଟିଳ ପ୍ରଶ୍ନ ହେଉନା କାହିଁକି, ସରଳ ହୋଇଯିବ । ତୁମେ ଏ କାମଟି ଶେଷ କରିଦେଲେ ଡେଲଟାରେଜ୍‌ର ଧର୍ମ ଉପରେ ବିଶେଷ ଜ୍ଞାନ ଆହରଣ କରି ହେବ । ତୁମେ ଶୀଘ୍ର ଶୀଘ୍ର ଲାଗିପଡ଼ି ଶେଷ କର ।"

"ହଁ, ଅଉଗୋଟାଏ କଥା ପଚାରିବାକୁ ଭୁଲି ଯାଇଛି । ଆମର ଏବେ ଡେଲଟାରେଜ୍ ଉପରେ ଯେଉଁ କାମଟି ଶେଷ ହୋଇଥିଲା, ସେଇଟାର ଟାଇପ୍ ସରିଛି ?"

"ହଁ ସାର୍, ସମସ୍ତ କାମ ସରି ଯାଇଛି । ସେଇଟିକୁ ମୁଁ ଆପଣଙ୍କ ଆଇରନ୍ ଚେଷ୍ଟ ଭିତରେ ରଖି ଦେଇଛି ।"

"କାହାକୁ କୃତଜ୍ଞତା ଜଣାଉଛ ?"

"କାହାକୁ କୃତଜ୍ଞତା ଜଣାଇନି, ଆମକୁ କିଏ ତ ସାହାଯ୍ୟ କରି ନାହାଁନ୍ତି ।"

ସାହାଯ୍ୟ କରିବା କଥା ଶୁଣି ଡକ୍ଟର ମିଶ୍ର ହସି ପକାଇଲେ । ସ୍ୱପ୍ନାଦେବୀଙ୍କୁ ଚାହିଁ ଗମ୍ଭୀର ହୋଇଯାଇ କହିଲେ "ତୁମେ ମୋ ଛାତ୍ରୀ ହୋଇ ଏ କଥା କହି ପାରୁଛ ? ଆମକୁ

Digitized by srujanika@gmail.com

କେହି ସାହାଯ୍ୟ କରି ନାହାଁନ୍ତି । ତା ବୋଲି ଆମେ ତାହାଙ୍କୁ କୃତଜ୍ଞତା ଜଣାଇବା ନା । ଆମେ ଯଦି କୃତଜ୍ଞତା ଜଣାଉ, ତେବେ ଆମର ଖତିଟା କଣ ହେବ କହିଲ ? କଣ ଆମ ସମ୍ମାନଟା କମିଯିବ ? ହଉ, ତୁମେ ଅଗ ସେ ପେପରଟା ଆଣିଲ, ମୁଁ ଦେଖିବି ।”

"ସ୍ୱପ୍ନାଦେବୀ ଆଟ୍ଟାଚ୍‌ କେସ୍‌ରୁ ଲେଖାଟି ଅଣି ଡକ୍ଟର ମିଶ୍ରଙ୍କ ହାତକୁ ବଢ଼ାଇ ଦେଲେ ।

ଡକ୍ଟର ମିଶ୍ର ସେହିଟିକୁ ଦେଖି ଦେଖି କହିଲେ "ତୁମ ମୁଣ୍ଡ କଣ ବିଗିଡ଼ି ଯାଇଛି କି ? ଏହା ଉପରେ ତୁମ ନାଁ ଲେଖିନ ତାହିଁକ ? ଏ ସବୁ କଥା କଣ ତୁମକୁ କହିବାକୁ ପଡ଼ିବ ? ଆଜ ଆଗ ଏହାକୁ ତୁମେ ଠିକ୍ କରି ଦିଅ । ଏ ଲେଖା ଉପରେ, ଆମ ଉଭୟଙ୍କ ନାମ ଲେଖିବ । ଶେଷରେ ଆମ ହେଡ୍ ଅଫ୍ ଦି ଡ଼ିପାର୍ଟମେଣ୍ଟ ଓ ଅନ୍ୟାନ୍ୟ ପ୍ରଫେସରମାନଙ୍କୁ କୃତଜ୍ଞତା ଜଣାଇବ । ଏ ସମସ୍ତ ଲେଖି ପେପରଟିକୁ ଠିକ୍ କରିଦେଲେ ଶୀଘ୍ର ବାହାରକୁ ଛପାଇବା ପାଇଁ ପଠାଇ ଦେବା । କଣ ବୁଝିଲ ନା ନାହିଁ ?"

ସ୍ୱପ୍ନା ଦେବୀ ଲେଖାଟିକୁ ନେଇ ସଜାଡ଼ି ନିଜ ପାଖରେ ରଖି ରଖି କହିଲେ - "ସାର୍ କେତେଦିନ ହେଲା ଆପଣ କଣ ଗୋଟାଏ ପରୀକ୍ଷା ଚଳାଇଛନ୍ତି । କିନ୍ତୁ କାହିଁ ସେ ଏକ୍‌ସପେରିମେଣ୍ଟ କଥା ତ ମତେ କିଛି କହୁ ନାହାଁନ୍ତି" ?

Digitized by srujanika@gmail.com

"ତୁମକୁ କାହିଁକି ଜଣାଇବି, ଜାଣିଛ ? ସେ ଏକ୍ସ-ପେରିମେଣ୍ଟ ବର୍ତ୍ତମାନ ବଡ଼ ହାସ୍ୟାସ୍ପଦ ଅବସ୍ଥାରେ ଅଛି । ଯେଉଁଦିନ ଏକ୍ସପେରିମେଣ୍ଟଟା ସଫଳହବାର ଆଶା ଦେଖିବି, ସେ ଦିନ ତ ତୁମକୁ ଆଗ ଜଣାଇବି, ତୁମେ ଏତେ ବ୍ୟସ୍ତ ହେଉଛ କାହିଁକି ? ତୁମେ ତୁମ କାମଟିକୁ ଅଗ ସାରି-ଦେଲ । ଏ ବିଷୟରେ ଆଲୋଚନା କରୁଥିଲେ, ଆଲୋଚନା ମୋଟେ ଶେଷ ହବନି ଆଜି କାମ କରିବ କେତେବେଳେ ? ତୁମେ ତୁମ କାମ କର, ମୁଁ ଟିକିଏ ମୋ କାମଟା କରେ ।" ଏହା କହି ଉଦ୍ଧବ ମିଶ୍ର ପଢ଼ିବାରେ ଲାଗିଲେ ।

× × × × ×

ଦିନ ଦି ପ୍ରହର । ବୈଶାଖ ମାସର ଅସହ୍ୟ ଖରା । ପବନ କି ଗରମ ! ଘର, ଦ୍ୱାର, କାନ୍ଥ ସମସ୍ତ ତାତି ଉଠୁଛି ଏ ଖରାର ଦାଉ ରେ, ଆଉ ରାସ୍ତା କଥା ପଚାରେ ବା କିଏ ? ରାସ୍ତା ର ପିଚୁ ଗୁଡ଼ାକ ତ ତରଳି ଯାଉଛି । ସେଥି ଗରମ ସହି ନ ପାରି ତାତି ଉଠିଛି କଟକ ନଗରୀ । ଯେଉଁ ରାସ୍ତାରେ ସନ୍ଧ୍ୟା ବେଳେ ଗହଳି ଯୋଗୁ ଚାଲିକରି ଯିବା କଷ୍ଟ ହୁଏ, ସେହି ରାସ୍ତା ପ୍ରଚଣ୍ଡ ଖରା ଯୋଗୁ ହୋଇଛି ନିସ୍ତବ୍ଧ । ରାସ୍ତାରେ ଜନ ସମାଗମ ନାହିଁ । ବେଳେ ବେଳେ ଶୁଭୁ ଯାଉଛି ସାଇକେଲ୍ ରେକ୍ସାର ଟିଣ୍ ଟିଣ୍ ଶବ୍ଦ । ରାସ୍ତା କଡ଼-ମାନଙ୍କରେ ପହରା-ପୋଲିସ ପରି ଠିଆ ହୋଇଛି ସରବତ୍ ଦୋକାନ । ଆଉ କୋଳାହଳ ନାହିଁ । ମନେ ହୁଏ ବୈଶାଖର ବହ୍ନି ଜାଳି ଦେଉଛି ସାରା ନଗରୀ କୁ ।

Digitized by srujanika@gmail.com

କିନ୍ତୁ ଏହି ଜନ୍ଦୁ ଉଦ୍ଧଅ ଦୁଇ ପ୍ରହର ଠାରେ କର୍ମ ମୁଖର ହୋଇ ଉଠିଛି ରେଭେନ୍‌ସା କଲେଜ । ସତେ ଯେପରି ବୈଶାଖୀ ପବନ କଲେଜ ପାଚେରି ଟପି ଭିତରକୁ ଯାଇପାରୁନି । କାହାରି ମୁହଁରେ ଶାନ୍ତି, କ୍ଲାନ୍ତିର ଚିହ୍ନ ନାହିଁ । ସମସ୍ତଙ୍କ ମୁହଁରେ ଲାଗି ରହିଛି ଉତ୍ସାହର ହସ । ଅଧ୍ୟାପକମାନେ ପାଠ ପଢାଇବାରେ ବ୍ୟସ୍ତ । ଛାତ୍ର ଛାତ୍ରୀମାନେ ଗୋଟିଏ କ୍ଲାସ ସାରି ଦୌଡା ଦୌଡ଼ି କରି ଅନ୍ୟ କ୍ଲାସରେ ଯୋଗ ଦବାକୁ ଯାଉଛନ୍ତି । ସମସ୍ତଙ୍କ ହସ, କୋଳାହଳରେ କଲେଜଟି ପୁରି ଉଠୁଛି ।

କିନ୍ତୁ ସେହି ହସ ହଠାତ୍ ସମସ୍ତଙ୍କ ମୁହଁରୁ ଲିଭିଗଲା । ସମସ୍ତଙ୍କ ମୁହଁରେ ବିଷାଦର ଛାୟା ଘୋଟିଗଲା । ସମସ୍ତେ ଠେଲା ପେଲା ହୋଇ ଦୌଡିବାକୁ ଲାଗିଲେ ପଦାର୍ଥ ବିଜ୍ଞାନର ଗବେଷଣା-ଗାର ଆଡ଼କୁ । ସମସ୍ତଙ୍କ ମୁହଁରେ ପ୍ରଶ୍ନବାଚୀ ଚିହ୍ନ । ସବୁରି ମୁହଁରେ ଗୋଟିଏ କଥା ଡକ୍ଟର ମିଶ୍ରଙ୍କର କଣ ହେଲା ? ଅଧ୍ୟାପକ ରଥ ପଦାର୍ଥ ବିଜ୍ଞାନାଗାର ଆଡ଼ୁ ଫେରି ଆସୁ ଆସୁ ଅଧ୍ୟାପକ ମହାପାତ୍ରଙ୍କୁ ଦେଖି କହି ଉଠିଲେ, "ମିଃ ମହାପାତ୍ର, ଆପଣ କଣ ଡକ୍ଟର ମିଶ୍ରଙ୍କୁ ଦେଖିବାକୁ ଯାଉଛନ୍ତି କି ? ଅବସ୍ଥା ବଡ଼ ସଙ୍କଟାପନ୍ନ । କଣ ଯେ ହଠାତ୍ ଏପରି ତାଙ୍କର ହେଲା କହି ହବନି । ହଉ, ଅପଣ ଯାଆନ୍ତୁ, ମୁଁ ପ୍ରିନ୍‌ସିପାଲ୍‌ଙ୍କ ଅଫିସରୁ ଫୋନ କଲେ ଅମ୍ବୁଲାନସ୍ ଆସିବ ।" ମିଃ ରଥ ତରବର ହୋଇ ପ୍ରିନ୍‌ସିପାଲଙ୍କ ଅଫିସ ଆଡକୁ ଅଗେଇଲେ ଓ ମିଃ ମହାପାତ୍ର ପଦାର୍ଥ ବିଜ୍ଞାନାଗାର ଆଡକୁ ଆଗେଇଲେ ।

ମିଃ ମହାପାତ୍ର ପହଞ୍ଚି ଦେଖିଲେ, ଛାତ୍ର ଅଧ୍ୟାପକ ଅନେକ ଜମା ହୋଇଛନ୍ତି । ସମସ୍ତେ ବ୍ୟସ୍ତ । ସେମାନଙ୍କ ଭିତରେ

Digitized by srujanika@gmail.com

ସ୍ୱପ୍ନାଦେବୀ ଛୁଡ଼ା ହୋଇଛନ୍ତି । ଆଖି ତାଙ୍କର ଲୁହ ଛଳ ଛଳ । ମିଃ ମହାପାତ୍ର ସ୍ୱପ୍ନାଦେବୀଙ୍କୁ ଦେଖି ପଚାରିଲେ, "ଡ଼କ୍ଟର ମିଶ୍ର ଅଚେତ ହୋଇଗଲେ ବେଳେ ତାଙ୍କ ପାଖରେ ତୁମେ ଥିଲ ?"

ସ୍ୱପ୍ନାଦେବୀ ଦୁଃଖରେ ଭାଙ୍ଗି ପଡ଼ି କହିଲେ "ନା' ସାର, ମୁଁ ନଥିଲି । ସକାଳ ସାତଟା ସମୟରୁ ଡକ୍ଟର ମିଶ୍ର ମୁଁ ରିସର୍ଚ୍ଚ ରୁମରେ ଥିଲୁଁ । ଡକ୍ଟର ମିଶ୍ର ମୋତେ ଦେଇଥିବା କାମ ମୁଁ କରୁଥିଲି । ସେ ତାଙ୍କ ନିଜର ଅନ୍ୟ କିଛି କାମରେ ବ୍ୟସ୍ତ ଥିଲେ । ଗୋଟାଏ ବେଳେ ଖାଇବାକୁ ଯିବାକୁ ଅନେକ କହିଲି ସେ ମୋ କଥା ନଶୁଣି ତାଙ୍କ କାମରେ ବ୍ୟସ୍ତ ରହିଲେ । ମୋତେ ଖୁବ୍ ଭୋକ ହେଲାରୁ ମୁଁ ସାଢେ ଗୋଟାଏ ବେଳେ ତାଙ୍କୁ କହି ଖାଇବାକୁ ଗଲି । ଖାଇକରି ଆସି ଦେଖେତ ସେ ଏପରି ଅଚେତ ଅବସ୍ଥାରେ ପଡ଼ି ରହିଛନ୍ତି । ଯେତେ ଡାକିଲେ କିଛି ଉତ୍ତର ଦେଉନାହାନ୍ତି । ତା'ପରେ ବାହାରକୁ ଯାଇ ଅନ୍ୟମାନଙ୍କୁ ଡାକି ଆଣିଲି । କଣ ସେ ହେବ କହି ହେଉନି, ଏ ପର୍ଯ୍ୟନ୍ତ ଆମ୍ବୁଲାନ୍‌ସ ଆସିନାହିଁ ।"

"ବ୍ୟସ୍ତ ହୁଅନ୍ତୁନି ସ୍ୱପ୍ନାଦେବୀ, ବୋଧହୁଏ ଆମ୍ବୁଲାନ୍‌ସ ବର୍ତ୍ତମାନ ଆସି ପହଞ୍ଚିବ ।"

ଅଳ୍ପ ସମୟ ପରେ ଆମ୍ବୁଲାନ୍‌ସ ଆସି ପହଞ୍ଚିଲା । ଡକ୍ଟର ମିଶ୍ରଙ୍କୁ ନେଇ ଦୁଇଜଣ ଅଧ୍ୟାପକ ମେଡ଼ିକାଲ ଗଲେ । କଲେଜ ବାତାବରଣ ନିସ୍ତେଜ ହୋଇଗଲା । ଛାତ୍ର ଛାତ୍ରୀମାନଙ୍କ ହସ ଲିଭିଯାଇ ଘୋଟିଗଲା ବିଷାଦର କାଳିମା । ସମସ୍ତେ ପଢା ଛାଡିଦେଇ ଆଲୋଚନା କରିବାରେ ଲାଗିଲେ-ଡକ୍ଟର ମିଶ୍ରଙ୍କର କଣ ହେଲା ?

Digitized by srujanika@gmail.com

ଘ୍ୱା ଭିତରେ ଘଣ୍ଟାଏ ବିତିଗଲଣି । କଲେଜ ଅଫିସରେ ପ୍ରିନ୍ସିପାଲ ଓ କେତେଜଣ ଅଧ୍ୟାପକ ବସିଥାନ୍ତି । ପ୍ରିନ୍ସିପାଲ ମେଡିକାଲକୁ ଫୋନ କରି ବୁଝୁଥାଆନ୍ତି ଡକ୍ଟର ମିଶ୍ରଙ୍କ ଅବସ୍ଥା କପରି । ଫୋନରେ ଜଣେ ଡାକ୍ତର ଉତ୍ତର ଦେଲେ ଡକ୍ଟର ମିଶ୍ର ଯେପରି ଅବସ୍ଥାରେ ଥିଲେ, ବର୍ତ୍ତମାନ ସେହି ଅବସ୍ଥାରେ ଅଛନ୍ତି ତେବେ ବିଶେଷଜ୍ଞ-ମାନେ କହୁଛନ୍ତି ଯେ କୌଣସି କାରଣରୁ ତାଙ୍କର ସମସ୍ତ ଇନ୍ଦ୍ରିୟ ଅଚଳ ହୋଇ ଯାଇଛି । ତେବେ ଦେଖା-ଯାଉ କଣ ହେଉଛି । ପ୍ରିନ୍ସିପାଲ ଅଧ୍ୟାପକ-ମାନଙ୍କୁ ଫୋନରେ ଯାହା, ଉତ୍ତର ଆସିଲା କହିଦେଲେ । ସମସ୍ତଙ୍କ ମନରେ ଦୁଃଶ୍ଚିନ୍ତା ବଢ଼ିଲା । ଡ଼କ୍ଟର ମିଶ୍ର କଣ ସୁସ୍ଥ ହେବେନି ? ସ୍ୱପ୍ନା ଦେବୀ ବେଶି ବ୍ୟସ୍ତ ହଉଥାନ୍ତି । ମନରେ ତାଙ୍କର ଅଜସ୍ର ପ୍ରଶ୍ନ ମୁଣ୍ଡଟେକି ଉଠୁଛି । ସତରେ କି ଡକ୍ଟର ମିଶ୍ର ସଂପୂର୍ଣ୍ଣ ସୁସ୍ଥ ହୋଇ ଉଠିବେ । ଡକ୍ଟର ମିଶ୍ର କେତେ ଦିନ ଚିକି ରହିବେ କିଏ କହିବ ? ଆଉ ବା ସେ କାହା ପାଖରେ ସେବା କରିବେ । କିଏ ବା ଏତେ ଚିତ୍ରାପଡ଼ି କରିବା ପାଇଁ ସାହାଯ୍ୟ କରିବେ । ଡକ୍ଟର ମିଶ୍ରଙ୍କପରି ପରିଶ୍ରମୀ ଓ ନିଷ୍ଠାପର ଲୋକଙ୍କୁ ଭଗବାନଙ୍କର ଏ କି ଆଘାତ ? ସମସ୍ତଙ୍କ ମନ ଭିତରେ ନାନା ପ୍ରକାର କଳ୍ପନା ଘୂରୁଛି । ଘର ଭିତରଟିରେ ନୀରବତା ଘୋଟିଥାଏ । ସମସ୍ତେ ଚିନ୍ତା ମଗ୍ନ ।

ସମସ୍ତ କାହାକୁ ଅପେକ୍ଷା କରୁଥିନ, ଘଣ୍ଟା କଣ୍ଟା ଆଗକୁ ମାଡ଼ି ଚାଲିଛି । ଡକ୍ଟର ମିଶ୍ର ମେଡ଼ିକାଲ ଯିବାର ଦୁଇ ଘଣ୍ଟା ହୋଇ ଗଲଣି । ପ୍ରିନ୍ସିପାଲ ପୁଣି ଥରେ ମେଡ଼ିକାଲ୍‌କୁ ଫୋନ

Digitized by srujanika@gmail.com

କଲେ । ଉତ୍ତର ଆସିଲା - ଡ଼କ୍ଟର ମିଶ୍ର ନିଜକୁ ସମ୍ପୂର୍ଣ୍ଣ ସୁସ୍ଥ ମନେକରି ହଠାତ୍ ଏକ୍‌ସାରେ କଲେଜ ଫେରିଗଲେଣି । ଡାକ୍ତରମାନେ ଯିବାପାଇଁ ଯେତେ ବାରଣ କଲେ ବି ସେ କିଛି ଶୁଣିଲେନି । ସେ ବୋଧହୁଏ କଲେଜରେ ପହଞ୍ଚି ଯିବେଣି । ପ୍ରିନ୍‌ସିପାଲ୍ ଫୋନ ରିସିଭରଟି ରଖିଦେଇ ସମସ୍ତଙ୍କୁ କହିଲେ, "ଏ ବଡ଼ ଆଶ୍ଚର୍ଯ୍ୟ କଥା, ଡକ୍ଟର ମିଶ୍ର ମେଡ଼ିକାଲରୁ ଚାଲି ଆସିଲେଣି ବୋଲି ଡାକ୍ତର କହିଲେ । ଏ କଣ ସବୁ ଘଟିଯାଉଛି, ମୁଁ କିଛି ବୁଝି ପାରୁନି ।" ସମସ୍ତଙ୍କ କଥାରେ ପୂର୍ଣ୍ଣଚ୍ଛେଦ ପକାଇ ଘର ଭିତରକୁ ପଶିଆସିଲେ ଡକ୍ଟର ମିଶ୍ର । ମୁହଁରେ ନାହିଁ କ୍ଳାନ୍ତି, ଅବସାଦର ଚିହ୍ନ, ଦେହରେ ନାହିଁ ଦୁର୍ବଳତା । ମୁହଁରେ ସେହି ପୂର୍ବ ପରିଚିତ ହସ ଲାଗିରହିଛି । ପ୍ରିନ୍‌ସିପାଲ୍‌ଙ୍କୁ ଦେଖି ସେ କହିଲେ, "ନମସ୍କାର ।" କିନ୍ତୁ କାହାରି ମୁହଁରେ ଭାଷା ଫୁଟୁନି, ସମସ୍ତେ ସ୍ତମ୍ଭୀଭୂତ ହୋଇ ଚାହିଁ ରହିଛନ୍ତି । ନୀରବତା ଭାଙ୍ଗି ପ୍ରିନ୍‌ସିପାଲ୍ କହିଲେ - "ତୁମେ ମେଡ଼ିକାଲ୍‌ରୁ ଏତେଶୀଘ୍ର କାହିଁକି ଚାଲି ଆସିଲ ? ଅନ୍ତତଃ ଦିନେ ଦୁଇଦିନ ରହିବା ଉଚିତ ଥିଲା । ତୁମର କଣ ହେଲା, ଡାକ୍ତରମାନେ ଜାଣିପାରି ନାହାନ୍ତି, ଅଥଚ ତୁମେ ନିଜକୁ ସୁସ୍ଥ ମନେକରି ଚାଲି ଆସିଲଣି । ଏ କି ଘଟଣା ଘଟୁଛି, ମୁଁ କିଛି ବୁଝି ପାରୁନି । ମୁଁ ଘଣ୍ଟାଏ ପୂର୍ବରୁ ଫୋନ କରି ବୁଝିଥିଲି ଯେ ତୁମେ ସେହିପରି ଅଚଳ ଅବସ୍ଥାରେ ଅଛ । ବର୍ତ୍ତମାନ ଫୋନ କରି ବୁଝିଲି ଯେ ତୁମେ କଲେଜ ଫେରି ଆସିଲଣି । ଏଥିରେ କେଉଁ ବ୍ୟକ୍ତି ଆଶ୍ଚର୍ଯ୍ୟ ନହେବ କହିଲ ?"

Digitized by srujanika@gmail.com

ଉତ୍କଳ ମିଶ୍ର ପାଖରେଥିବା ଗୋଟିଏ ଚେୟାର ଉପରେ ବସି ପଡ଼ି ପଡ଼ି କହିଲେ, "ଆପଣମାନେ ଯେପରି ଆଶ୍ଚର୍ଯ୍ୟ ହେଉଛନ୍ତି, ମୁଁ ମଧ୍ୟ ଠିକ୍ ସେହିପରି ଆଶ୍ଚର୍ଯ୍ୟ ହେଉଛି । ରିସର୍ଚ୍ଚ ରୁମ୍‌ରେ ଗବେଷଣା କରୁଥିବା ସମୟରେ ହଠାତ୍ ମୋ ହାତଗୋଡ଼ ଝିମ୍ ଝିମ୍ ହୋଇଗଲା । ତା'ପରେ, ପରେ ମୋର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଶକ୍ତିହୀନ ହୋଇ ପଡ଼ିଲା । ପାଟିକରି ଡାକିବି ବୋଲି ଯେତେ ଚେଷ୍ଟା କଲେବି ମୋ ପାଟି ଖୋଲିଲାନି । ଆଖି ପତା ମୋର ପଡ଼ିଲାନି । ସମସ୍ତ ଇନ୍ଦ୍ରିୟ ମୋର ନିଷ୍କ୍ରିୟ ହୋଇଗଲେ । କିନ୍ତୁ ମେଡ଼ିକାଲ୍‌ରେ ପହଞ୍ଚିବାର ଠିକ୍ ଦେଢ଼ଘଣ୍ଟାକ ପରେ ମୋର ସମସ୍ତ ଇନ୍ଦ୍ରିୟ ସତେଜ ହୋଇ ଉଠିଲେ । ମୁଁ ସମ୍ପୂର୍ଣ୍ଣ ସୁସ୍ଥ ଅନୁଭବ କଲି । ମୋର ଦେହ ଭଲ ଲାଗିଲା । ମେଡ଼ିକାଲ୍ ବାତାବରଣ ଭିତରେ ବେଶୀ ପର ପଡ଼ିରହିବାକୁ ଭଲ ଲାଗିଲାନି । ଡାକ୍ତରମାନେ ମୋତେ ଆସିବାକୁ ବାରମ୍ବାର ମନା କରୁଥିଲେ । କିନ୍ତୁ ସେମାନଙ୍କୁ ମୁଁ ଅନୁରୋଧ କରି କହି ଚାଲି ଆସିଲି ।"

ତାଙ୍କଠାରୁ ସମସ୍ତ ଶୁଣି ଅଧ୍ୟାପକ, ପ୍ରିନ୍‌ସିପାଲ୍ ସମସ୍ତେ ଚଉଡ଼ା ପାଲଟି ଗଲେଣି । ସମସ୍ତେ ନିଜ ମନକୁ ମନ ପଚାରୁଥାନ୍ତି, ଏ ଘଟଣା ସତ୍ୟ ନା କୁହୁକ ?

ପ୍ରିନ୍‌ସିପାଲ୍ ପିଅନକୁ ଡାକି କଫି ଆଣିବାକୁ କହିଲେ । କଫି ଆସିଲା । ସମସ୍ତେ ଗୋଟିଏ ଗୋଟିଏ କପ୍ ନେଇ ଖାଇବାକୁ ଲାଗିଲେ । ପ୍ରିନ୍‌ସିପାଲ୍ କଫି ପିଇ ପିଇ ଉତ୍କଳ ମିଶ୍ରଙ୍କୁ

Digitized by srujanika@gmail.com

କହିଲେ,"ତୁମେ ଆଜଠାରୁ କିଛିଦିନ ପାଇଁ ବିଶ୍ରାମ ନିଅ । ତୁମେ କିଛିଦିନ ଛୁଟି ନେଇଯାଅ । ତୁମ ପକ୍ଷରେ ବିଶ୍ରାମ ନିତାନ୍ତ ଦରକାର ।"

ଅଧ୍ୟାପକ-ମାନେ ମଧ୍ୟ କହିଲେ,"ହଁ ସାର୍, ଡ଼କ୍ଟର ମିଶ୍ରଙ୍କ ଶରୀର ପକ୍ଷରେ ବିଶ୍ରାମ ନିହାତି ଦରକାର । ବର୍ତ୍ତମାନ ବେଶୀ ଗପ କଲେ ତାଙ୍କ ଶରୀର ପକ୍ଷରେ ଅହିତକର ହେବ, ତେଣୁ ଚାଲନ୍ତୁ ସମସ୍ତେ ଯିବା ।"

ପ୍ରିନ୍‌ସିପାଲ୍ ଚେୟାରରୁ ଉଠି ପଡ଼ୁ ପଡ଼ୁ କହିଲେ- ଚାଲ ଯିବା ।

ସମସ୍ତେ, ଗପ କରି କରି କଲେଜ ପଡ଼ିଆ ଭିତରେ ଯିବାକୁ ଲାଗିଲେ । ଡ଼କ୍ଟର ମିଶ୍ର ଓ ସ୍ୱପ୍ନା ଦେବୀ ଡ଼କ୍ଟର ମିଶ୍ରଙ୍କ ଘର ଅଭିମୁଖେ ଚାଲିଲେ । କିଛି ଦୂର ଯିବାପରେ ସମସ୍ତେ ନିଜ ନିଜ ଗୃହ ଅଭିମୁଖରେ ଚାଲିଲେ ।

ଡ଼କ୍ଟର ମିଶ୍ର ଓ ସ୍ୱପ୍ନା ଦେବୀ ନୀରବରେ ଚାଲୁଥାନ୍ତି । କାହାରି ମୁହଁରେ ଭାଷା ନାହିଁ । ଅସ୍ତମିତ ସୂର୍ଯ୍ୟର ଲାଲ ରଙ୍ଗର ଛିଟା ଆସି ଦୁହିଁଙ୍କ ଦେହରେ ପଡ଼ୁଥାଏ । ପକ୍ଷୀମାନେ ଶବ୍ଦ କରି ବାହୁଡ଼ି ଯାଉଥାନ୍ତି ନିଜ ବସା ଅଭିମୁଖେ । ଦୁଇ କଡ଼ରେ ଥିବା ଫୁଲଗଛ ଗୁଡ଼ିକ ପବନରେ ଦୋହଲି ଉଠୁଛନ୍ତି । ନୀରବତା ଭଙ୍ଗ କରି ଡ଼କ୍ଟର ମିଶ୍ର କହିଲେ, "ସ୍ୱପ୍ନା, ତୁମେ ଘରେ କହିଦେଇ ଆସ, ନଚେତ୍ ତୁମ ମାଆ ବ୍ୟସ୍ତ ହେବେ । ସନ୍ଧ୍ୟା ତ ହେଲାଣି, ତୁମେ ଆମ ଘରକୁ ଯାଇ ଫେରିଲା ବେଳକୁ ଡେରି ହେବ ।"

Digitized by srujanika@gmail.com

ସ୍ୱପ୍ନା ଦେବୀ ତଳକୁ ମୁହଁ ପୋତି ଉତ୍ତର ଦେଲେ –
"ଯଦି ଫେରିବାରେ ଡ଼େରି ହୁଏ, ତେବେ ମା ନିଶ୍ଚୟ ଜାଣିବେ,
ମୁଁ ଆପଣଙ୍କ ଘରକୁ ଯାଇଛି । ତେଣୁ କହିବା ପାଇଁ ଯିବା
ଦରକାର ନାହିଁ ।"

"ବେଶ୍ ଭଲ । ହଁ ଏମିତି ଚୁପ ଚାପ କାହିଁକି ? କଣ, ତୁମ
ରିସର୍ଚ୍ଚ କାମର ସମାଧାନ ହେଲା ? ଆଜି ସେ ପେପର୍ ଗୁଡ଼ାକ
ସବୁ ଠିକ୍ କରି ରଖି ଦେଇଛତ ।"

"ଆପଣଙ୍କ ଦେହ ଅଜି ଭଲ ନାହିଁ । ଆଜି ରିସର୍ଚ୍ଚ
ନେଇ ବ୍ୟସ୍ତ ହୁଅନ୍ତୁନ ? ଶୀଘ୍ର ଆପଣଙ୍କର ବିଶ୍ରାମ ନବା
ଉଚିତ । ଆପଣ ଯଦି ଏ ଦେହ ଖରାପ ସମୟରେ ଏ ରିସର୍ଚ୍ଚ
ବିଷୟ ଏତେ ଚିନ୍ତା କରିବେ, ତେବେ ତ ଦେହ ଭଲ ହେବା
ପରିବର୍ତ୍ତେ ବେଶୀ ଖରାପ ହେବ ।"

"ହଉ ଭଲ, ମୁଁ ଆଜି ବେଶୀ ଚିନ୍ତା କରିବିନି, ଅନ୍ତତଃ
ମୋର ଛାତ୍ରୀ ସ୍ୱପ୍ନା ଦେବୀଙ୍କ ଅନୁରୋଧ ରଖିବି ।" ଏହା କହି
ଡକ୍ଟର ମିଶ୍ର ହସି ଦେଲେ ।

ସ୍ୱପ୍ନା ଦେବୀ ଲାଜରେ ମୁହଁ ତଳକୁ ପୋତି ଚାଲିବାକୁ
ଲାଗିଲେ ।

ଅପରାହ୍ନ ପାଞ୍ଚଟା ସମୟ । ନିଜ ଘରର ଭିତରପଟ
ବାରଣ୍ଡାରେ ଗୋଟିଏ ଆରାମ ଚେୟାରରେ ବସିଥାନ୍ତି ଡ଼କ୍ଟର
ମିଶ୍ର । ବାମ ହାତରେ ତାଙ୍କର ଗୋଟିଏ ବହି, ଡାହାଣ ହାତରେ

Digitized by srujanika@gmail.com

ଥଣ୍ଡା ହୋଇ ଯାଇଥିବା ଅଧକପ୍ କଫି । ବାରଣ୍ଡା ପାଖ ବଗିଚାରୁ ଭସି ଆସୁଛି ମଲ୍ଲୀ ଓ ଗୋଲାପର ସ୍ନିଗ୍ଧ ମଧୁର ଗନ୍ଧ । କେଉଁଆଡ଼କୁ ତାଙ୍କର ନଜର ନାହିଁ । ସେ ଭୁଲି ଯାଇଛନ୍ତି କଫି ଖାଇବାକୁ । ବୈଜ୍ଞାନିକ ହଜି ଯାଇଛନ୍ତି ବିଜ୍ଞାନର ପୁସ୍ତକ ମଧ୍ୟରେ ।

ପଛରୁ ଆସିଲେ ସ୍ୱପ୍ନା ଦେବୀ, ଦେହରେ ତାଙ୍କର ଅକାଶ ରଙ୍ଗର ଶାଢୀ, ଶାଢୀ ସାଙ୍ଗକୁ ଗାଢ଼ ମେଘୁଆ ରଙ୍ଗର ବ୍ଲାଉଜ । ସର୍ପିଳ ବେଣୀ ଓଲଟି ଆସି ଦୋଳି ଖେଳୁଛି ଉନ୍ନତ ବୁକୁ ଉପରେ । ବେଣୀଟିର ଶୋଭା ବଢାଉଛି ଦୁଇଟି ପତ୍ରଯୁକ୍ତ ଲାଲ ଗୋଲାପ ।

ସ୍ୱପ୍ନା ଦେବୀ ଧୀରେ ଧୀରେ ଆସି ନୀରବରେ ଡକ୍ଟର ମିଶ୍ରଙ୍କ ହାତରୁ କଫି କପ ଟି ରଖି ଦେଲେ ।

ଡକ୍ଟର ମିଶ୍ର ସ୍ୱପ୍ନାକୁ କପଟି ନେଇଯିବାର ଦେଖି ହସି କହିଲେ, "ବହି ପଢ଼ୁ ପଢ଼ୁ କଫିଖାଇବାକୁ ମୁଁ ଭୁଲି ଯାଇଛି । ଯଦି ତୁମେ କପ୍ ଟି ନେଇ ଯାଇନଥାନ୍ତ, ତେବେ ଆଉ ଅଳ୍ପ ସମୟ ପରେ ତାହା ତଳେ ପଡ଼ି ଭାଙ୍ଗି ଯାଇଥାନ୍ତା । ଯାହା-ହେଉ କପ୍ ଟିକୁ ମୃତ୍ୟୁ ମୁଖରୁ ଉଦ୍ଧାର କରି ଦେଲ । ହଉ, ଆଉ ଗୋଟିଏ ଚେୟାର ଅଣି ବସ ।"

ସ୍ୱପ୍ନା ଦେବୀ ଚେୟାରଟି ଆଣି ବସି କହିଲେ, "ଆପଣ ଅସୁସ୍ଥ ବୋଲି ବିଶ୍ରାମ ନବାକୁ ଡାକ୍ତର କହୁଛନ୍ତି । ଅଥଚ ଆପଣ ବିଶ୍ରାମ ନନେଇ ବସିଛି ବହି ପଢ଼ାରେ ବ୍ୟସ୍ତ । ଘର ଭିତରେ ଯାଇ ବିଶ୍ରାମ ନିଅନ୍ତୁ ।"

Digitized by srujanika@gmail.com

"ଡାକ୍ତରମାନେ କହିଛନ୍ତି ବିଶ୍ରାମ ନେବାକୁ । କିନ୍ତୁ ମତେ ତ ଅସୁସ୍ଥ ବୋଧ ହେଉନି । ମୁଁ ରୋଗୀଙ୍କ ପରି ବିଛଣା ଧରିବି କାହିଁକି ? ତା'ପରେ ମୋ ବିଜ୍ନେସ ବିଷୟ ନେଇ ବ୍ୟସ୍ତ ନରହିଲେ କିଏ ବା କରିବ ? ଏ ଘରଟାରେ ପୁଷ୍ପାଶ୍ରୀ, ଆଉ ମୁଁ ଦୁଇଜଣ ଲୋକ । ପୁଷ୍ପାଶ୍ରୀ ତା କାମ ନେଇ ବ୍ୟସ୍ତ । ଆଉ ମୁଁ ମୋ ବହିପତ୍ର ନେଇ ବ୍ୟସ୍ତ ବର୍ତ୍ତମାନ ତୁମେ ଅଛିଲଣି, ବହିଟା ବନ୍ଦ କରି କିଛି ସମୟ କଥାବାର୍ତ୍ତା ହେବା ।" ଏହା କହି ଡକ୍ଟର ମିଶ୍ର ବହିଟିକୁ ବନ୍ଦ କରି ରଖିଲେ ।

"ଆପଣଙ୍କ କଫି ନଖାଇ ଥଣ୍ଡା କରିଦେଇଛନ୍ତି ମୁଁ କଫି କରି ନେଇ ଆସେ ।"

"ନା ତୁମେ ବସ, ମୁଁ ପୁଷ୍ପାଶ୍ରୀକୁ କହେ, ସେ କଫି ଆଣିଦେବ । ଅଳ୍ପ ସମୟ ପରେ ପୁଷ୍ପାଶ୍ରୀ ଦୁଇକପ କଫିଅଣି ଦେଇଗଲା । ଗୋଟିଏ କପ୍ ଡକ୍ଟର ମିଶ୍ରଙ୍କ ହାତକୁ ବଢ଼ାଇ ଦେଇ ଅନ୍ୟ କପ୍‌ଟି ସ୍ୱପ୍ନା ନେଇ ଧରିଲେ ।

ଡ଼କ୍ଟର ମିଶ୍ର କଫି ପିଉ, ପିଉ କହିଲେ - ଏଣିକି ଆଉ ଏକୁଟିଆ ରହିବାକୁ ଭଲ ଲାଗୁନି । ସବୁବେଳେ ଜଣଙ୍କର ସାହାଯ୍ୟ ଦରକାର ପଡୁଛି, କିନ୍ତୁ କାହିଁ ସେମିତି ନିଜର ଲୋକ ମୋର କେହି ନାହାନ୍ତି, ଯେ କି ଏଠାରେ ରହି ମୋତେ ସାହାଯ୍ୟ କରିବ ।

"ଗୋଟାଏ କଥା କହିବି ବୋଲି ଭାବୁଛି । ଆପଣ କିଛି ଖରାପ ଭାବିବେନି ।" "ତୁମ କଥାରେ ମୁଁ କେବେ ଖରାପ ଭାବିନି, କୁହ କଣ କହିବ ବୋଲି ଭାବିଛ ।"

Digitized by srujanika@gmail.com

"ଆପଣ ବିବାହ କରୁ ନାହାଁନ୍ତି କାହିଁକି ? ଆପଣତ ଏକୁ-ଟିଆ ହୋଇ ନାନା ପ୍ରକାର ଅସୁବିଧା ଭୋଗୁଛନ୍ତି ? ବିବାହ କଲେ ଆପଣ ଏକୁଟିଆ ରହନ୍ତେନି । ଆପଣଙ୍କର ଅନେକ ଅସୁବିଧା ଦୂର ହୁଅନ୍ତା ।"

"ହଁ, ଯାହା କହିଲ, ମନ୍ଦ ନୁହେଁ । ବିବାହ କରିବା ପାଇଁ ଜଣକୁ ମୁଁ ମନେ ମନେ ଠିକ୍ କରି ନେଇଛି । ବିବାହ ନକରି ମଧ୍ୟ ଅନେକ ସମୟରେ ସାହାଯ୍ୟ ପାଉଛି । ତେବେ ଯାହାକୁ ମୁଁ ବିବାହ କରିବି ବୋଲି ଠିକ୍ କରିଛି, ସେ ରାଜିହେବ କି ନାହିଁ, ମୁଁ ଜାଣିନି । ତାକୁ ମଧ୍ୟ ମୁଁ ମୋ ମନ କଥା ଜଣାଇନି ! ମୁଁ ସେହି ଶୁଭଦିନ ଅପେକ୍ଷାରେ ଅଛି । ମୋର ଆଶା ସେ ନିଶ୍ଚୟ ରାଜି ହେବ । ଦେଖା ଯାଉ କଣ ହଉଛି । ଆଚ୍ଛା ସ୍ୱପ୍ନା ତୁମେ କ'ଣ ବିବାହ କରିବନି ? ତୁମରତ Ph. D. ଏଥର ହୋଇଯିବ । ଅଉ ତା'ପରେ କଣ ସେହି ବିଜ୍ଞାନ ନେଇ ବ୍ୟସ୍ତ ରହିବ ?"

ସ୍ୱପ୍ନା ଲାଜରେ ଅଳ୍ପ ହସି କହିଲେ, "ମାଆ ମୋ ବିବାହ ନେଇ ସବୁବେଳେ ଚିନ୍ତିତ, କିନ୍ତୁ ବିବାହ କରିବାକୁ ମୋର ଇଚ୍ଛା ନାହିଁ । ଗୋଟିଏ ସଂସାର ଭିତରେ ବାନ୍ଧି ନହୋଇ, ଈଶ୍ୱର ସୃଷ୍ଟିରେ ବିଜ୍ଞାନ ବଳରେ ନିଜକୁ ହଜାଇ ଦେବା ଉଚିତ । ଆମେ ଯଦି ବିଜ୍ଞାନଗବେଷୀ ହୋଇ ଗବେଷଣା ନକରି ଘରର ଜଞ୍ଜାଳ ଭିତରେ ବୁଡ଼ି ଯାଉ, ତେବେ ଦେଶ ଆମଠାରୁ କି ଉପକାର ପାଇଲା ? କଳା ପ୍ରିୟ ଲୋକଙ୍କୁ ସଂସାର ମାୟା ମମତା ଭିତରେ ବନ୍ଧନ ସାଜିବ । ସେମାନେ ମଧ୍ୟ କଳାକାର-ପରି ନିଜର ସଂସାରକୁ ସୁନ୍ଦର କରି ଗଢ଼ି ପାରିବେ ।"

Digitized by srujanika@gmail.com

ଡକ୍ଟର ମିଶ୍ର ଅଳ୍ପ ହସି କହିଲେ, "ହଉ, ଚାଲନ୍ତୁ ବଗିଚାରେ ଟିକଏ ବୁଲି ଆସିବା । ଭଲ ପବନ ବହୁଥିବ ।"

ଡ଼କ୍ଟର ମିଶ୍ର ଓ ସୁପ୍ରୀ ଦେବୀ ବଗିଚାକୁ ବୁଲିବାକୁ ଗଲେ । ସେତେବେଳକୁ ମୃଦୁ ସଞ୍ଜ ହୋଇଗଲାଣି । କୁଳବଧୂମାନେ ତୁଳସୀମୂଳେ ସଳିତା ଜାଳି ପତି ପୁତ୍ରଙ୍କର ଶୁଭ ମନାସୁଥାନ୍ତି । ମନ୍ଦିରମାନଙ୍କରୁ ଭାସି ଆସୁଥାଏ ଆରତି ଶଙ୍ଖ ଘଣ୍ଟା କାହାଳୀର ଧ୍ୱନି । ଅଉ ଅଳ୍ପ ସମୟ ପରେ ଘନେଇ ଆସିବ ଅନ୍ଧାର ରଜନୀ । ସେ ଅନ୍ଧାରକୁ ଆଲୋକିତ କରି ହସି ଉଠିବ ମାଳ ମାଳ ବିଜୁଳି ବତୀ ।      ×      ×      ×

ସକାଳ ସାଢ଼ଟା, କଟକ ସହରର ରାସ୍ତାଗୁଡ଼ିକ ଜନ-କୋଳାହଳରେ ମୁଖରିତ ହେଲାଣି । ସମସ୍ତେ ବ୍ୟସ୍ତ ନିଜର ଦୈନନ୍ଦିନ କାର୍ଯ୍ୟ ନେଇ । ଶୁଭିଆଣ୍ଡ ଶୁଭିଲାଣି ରିକ୍ସା, ସାଇକଲ୍‌ର ଟିଣ୍, ଟିଣ୍ ରଡ଼ି । ଏଇ ସକାଳଟାରୁ ପେପର ବାଲାମାନେ ରାସ୍ତାରେ ରଡ଼ି ଛାଡ଼ୁଛନ୍ତି । ଖବର କାଗଜ ବାଲାଟିଏ ରାସ୍ତାରେ ଡାକି ଡାକି, ଯାଉଥାଏ, "ମହାନଦୀ ପୋଲ ନିକଟରେ ରକ୍ତାକ୍ତ ମୃତ ଦେହ । ମୃତ ଶରୀରଟିର ମସ୍ତକ ନାହିଁ । ମୃତ ଶରୀରଟି ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଡ଼କ୍ଟର ମିଶ୍ରଙ୍କର ବୋଲି ଜଣା ପଡ଼ୁଛି । ମୃତ ବ୍ୟକ୍ତିଙ୍କ ପାଖରୁ ଗୋଟିଏ ଲମ୍ବା ଚିଠି ଉଦ୍ଧାର କରା ଯାଇଛି ।"

ଅଧ୍ୟାପକ ରଥ ଖବରକାଗଜ ବାଲାର ଡାକରେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ବୋଧହୁଏ ଅପେକ୍ଷା କରିଥିଲେ

Digitized by srujanika@gmail.com

ଖବର କାଗଜ ଖଣ୍ଡିକ ପଢ଼ିବାକୁ । ମୁହଁରେ ତାଙ୍କର ଘୋଟି ଯାଇଛି ବିଷାଦର ଅନ୍ଧକାର । ସତେ କଣ ଡ଼କ୍ଟର ମିଶ୍ରଙ୍କର ମୃତ୍ୟୁ ଘଟିଛି ? କାଲିଠାରୁ ଶୁଣିଥିଲେ ବି ଖବର କାଗଜରୁ ପ୍ରକୃତ ଖବର ମିଳିବା ଆଶା କରି ଖବର କାଗଜ ଖଣ୍ଡିକ କିଣି ଫେରାଇଲେ । ଅଧ୍ୟାପକ ରଥ କାଗଜ ଖଣ୍ଡିକ ଖୋଲୁ ଖୋଲୁ ଆଖିରେ ତାଙ୍କର ପଡ଼ିଲା ଡକ୍ଟର ମିଶ୍ରଙ୍କର ଫଟୋ । ତା ତଳେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି ଡ଼କ୍ଟର ମିଶ୍ରଙ୍କର ଆକସ୍ମିକ ମୃତ୍ୟୁ । ସେ ଆତ୍ମହତ୍ୟା କରିଛନ୍ତି ବୋଲି ତାଙ୍କ ଚିଠିରୁ ଜଣା ପଡ଼ୁଛି । ଚିଠିଟିର ନକଲ ତଳେ ଦିଆଗଲା ।

ମୋର ପ୍ରିୟ ବନ୍ଧୁମାନେ,

ଏ ଚିଠି ଆପଣମାନେ ପାଇଲା ବେଳକୁ ମୁଁ ଏ ଜଗତରେ ନଥିବି । ଚାଲିଯାଇଥିବି ବହୁତ ଦୂରକୁ । ଦୁନିଆରେ ଦୁଃସ୍ଥ ଜୀବନ ଯାପନ କରିବା ବଡ଼ କଷ୍ଟ । ଯାହା କି ଆଜି ସହି ନପାରି ମୁଁ ଆତ୍ମହତ୍ୟା କରୁଛି । ସମସ୍ତେ ମୋତେ ଡ଼କ୍ଟର ମିଶ୍ର ବୋଲି ଜାଣନ୍ତି, କିନ୍ତୁ କେହି ମୋ ଅତୀତଟା ଜାଣି ନାହାନ୍ତି । ମୁଁ ଯେ ଜୀବନ ଭିତରେ କେତେ ସଂଗ୍ରାମ କରି ଆଜି ଡକ୍ଟର ମିଶ୍ର ହୋଇ ପାରିଛି, ତା କେବଳ ମୁଁ ଜାଣେ । ଆଜି ପର୍ଯ୍ୟନ୍ତ କାହାକୁ ମୁଁ ଜଣାଇନଥିଲି ମୋ ଜୀବନର ଇତିହାସ । ଆଜି ସାରା ଦୁନିଆକୁ ଜଣାଇ ଦେଉଛି ମୋର ସେହି ଦୁଃଖ ଭରା ଅତୀତ । ଯାହା ଶୁଣି ହୁଏତ କେହି ଭାବି ପାରିବେନି ଯେ ମୁଁ କେତେ କଷ୍ଟ ସହି ଆଜି ଦୁନିଆରେ ମଣିଷ ହୋଇ ଠିଆ ହୋଇଛି । ମଣିଷ ହବା ପରେ ବି ଅଭାବ ମୋର ଗଲାନି । ସେହି

Digitized by srujanika@gmail.com

ଧାର ଉଧାର ଲାଗି ରହିଲା । ଆଜ ସବୁ ପାଶିଲିନି ଏ ଦୁଃଖ । ଜୀବନ ଟା ଯାକ ସାଧନା କରି ଶେଷରେ ମହାପାପର ଆଶ୍ରୟ ନେଲି ।

ପିଲାଟି ଦିନୁ ମୁଁ ଦୁଃଖୀ । ମୋତେ ଯେତେବେଳେ ଅଢ଼େଇବର୍ଷ, ସେତେବେଳେ ମୋର ମାଆ ଇହଧାମ ତ୍ୟାଗ-କଲେ । ପିଉସୀଙ୍କ ସ୍ନେହ ମମତା ଭିତରେ ମୁଁ ଭୁଲି ଯାଇଥିଲି ମାଆଙ୍କ ମୃତ୍ୟୁ । ବାପାଙ୍କର ଏକମାତ୍ର ସନ୍ତାନ ମୁଁ । ତେଣୁ ସମସ୍ତ ସ୍ନେହର ଅଧିକାରୀ ହୋଇଥିଲି । କିନ୍ତୁ ବିଧିର ବିଧାନ, କିଏ କରିବ ଆନ । ଯେତେବେଳେ ମୋର ବାପାଙ୍କର ସ୍ନେହ ଏକମାତ୍ର ସମ୍ବଳ, ଠିକ୍ ସେତିକି ବେଳେ ମୁଁ ହେଲି ନିଃସ୍ୱ ।

ମୋତେ ସେତେବେଳେ ବାରବର୍ଷ । ମୁଁ ଗାଁ ସ୍କୁଲରେ ସପ୍ତମ ଶ୍ରେଣୀରେ ପଢ଼ୁଥାଏ । ପଢ଼ିବାରେ ମୋର କୌଣସି ଅସୁବିଧା ନଥାଏ । କିନ୍ତୁ ସେ ସୁବିଧା ମୋର ରହିଲାନି । ସେହିବର୍ଷ ବାପା ଓ ପିଉସୀ ଦୁଇଜଣ ଯାକ ମୋତେ ଏକା ଛାଡ଼ିଦେଇ ଆରପୁରକୁ ଚାଲିଗଲେ । ଦୁଃଖରେ ଭାଙ୍ଗି ପଡ଼ିଲି ମୁଁ । ଆଜ ଦୁନିଆରେ ବା ମୋର କିଏ ଅଛି । ବଡ଼ ଦୁଃଖ, କଷ୍ଟ, ସବୁ ସେ ବର୍ଷ ଗାଁ ସ୍କୁଲରୁ ପାସ୍ କରି ମାଇନର ପାଶ କଲି । ଗାଁରେ ହା : ଇ : ସ୍କୁଲ ନାହିଁ । ପଢ଼ିବି କେମିତି ? ପାଠ ନ ପଢ଼ି ବା କଣ କରିବି । ପଢ଼ିବାକୁ ଅଗ୍ରହ ଏତେ ହେଲା ଯେ, ଗାଁ ଛାଡ଼ି ମୁଁ କଟକ ଆସିଲି ।

ଭଗବାନ ଭକ୍ତକୁ ସାହାଯ୍ୟ କଲା ଭଳି, ମୋତେ ପ୍ୟାରୀ-ମୋହନ ଏକାଡ଼େମୀର ଶିକ୍ଷକ ବଳରାମ ବାବୁ ସାହାଯ୍ୟ

Digitized by srujanika@gmail.com

ଦେଉଲେ । ସେ ଶିକ୍ଷକ ମୋତେ ଆଶ୍ରୟ ନ ଦେଇଥିଲେ ମୋ ଧାହାସର ବନ୍ଧ ଭୂଷୁଡ଼ି ପଡ଼ିଥାନ୍ତା । ବୃତ୍ତି ପାଉଥାଏ, ଟ୍ୟୁସନ କରିବା ପାଇଁ ଇଚ୍ଛା କରୁଥିଲି, କିନ୍ତୁ ଶିକ୍ଷକ ମହାଶୟ ନିବର୍ତ୍ତାଇଲେ । କିନ୍ତୁ ମୋର ନବମ ଶ୍ରେଣୀ ହେବା ବର୍ଷ ଜଣେ ଭଦ୍ରଲୋକଙ୍କ ଘରେ ମୁଁ ଟ୍ୟୁସନ କଲି । ଗୃହଁ, ଗୃହ୍ମ ଅଭାବ, ଅନାଟନ ଭିତରେ ଗୃହେବିଟି ବର୍ଷ କଟିଗଲା । ମ୍ୟାଟ୍ରିକ୍ୟୁଲେଶନ ପରୀକ୍ଷା ଦେଲି । ମୋ ପରିଶ୍ରମର ଫଳ ପାଇଲି । ଉତ୍କଳ ଇଉନିଭରସିଟିରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ କଲି । କିନ୍ତୁ ସେ ଖୁସି ମୋର ରହିଲାନାହିଁ । କାରଣ ପରୀକ୍ଷା ଫଳ ବାହାରିବାର ଅଳ୍ପ ଦିନ ପରେ ସେ ଶିକ୍ଷକ ଇହଧାମ ତ୍ୟାଗ କଲେ । ମନରେ ମୋର ଦୁଃଖ ହେଲା ଯେ ମୁଁ ଯେଉଁ ଡାଳ ଧରୁଛି, ସେହି ଡାଳ ଭାଙ୍ଗୁଛି । ତଥାପି ଟଙ୍କା ଯୋଗାଡ଼ କରି କଲେଜରେ ନାମ ଲେଖାଇଲି ।

ଟ୍ୟୁସନ କରି ବହୁତ ଦୁଃଖ କଷ୍ଟ ସହି ଦିନଗୁଡ଼ିକ କାଟୁଥାଏ, ଏତେ ଦୁଃଖ ଭିତରେ ପଢ଼ିବାର ଉତ୍ସାହ କମିନି । ବିଜ୍ଞାନର ଗ୍ରୁଷହୋଇ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କିପରି ପ୍ରଥମ ହେବି, ସେଇଥାଏ ମୋର ଲକ୍ଷ୍ୟ ।

ଦିନ ପରେ ଦିନ ଚାଲିଯାଏ, କିନ୍ତୁ ସ୍ମୃତି ରହିଯାଏ । ସେହି ସ୍ମରଣୀୟ ଦିନଗୁଡ଼ିକ ଏବେ ବି ମୋର ମନେ ପଡ଼େ । ସେ ଗୋଟିଏ ଦିନ । ଯେଉଁ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟ ବି, ଏସ୍. ସି ପରୀକ୍ଷାରେ ପଦାର୍ଥ ବିଜ୍ଞାନ ଅନର୍ସ ନେଇ ଫାଷ୍ଟ କ୍ଲାସ ଫାଷ୍ଟ ହେଲି । ସର୍ବୋଚ୍ଚ ନମ୍ବର ରଖିଥିବାରୁ ବେଷ୍ଟ-

Digitized by srujanika@gmail.com

ଗ୍ରାଜୁଏଟ ଉପାଧି ପାଇଲି । ତା ପରେ ଜଣେ ପ୍ରଫେସର ମୋତେ ସାହାଯ୍ୟ କଲେ । ବର୍ତ୍ତମାନ ମଧ୍ୟ ସେ ପ୍ରଫେସରଙ୍କ ପ୍ରତି ଭକ୍ତିରେ ମୁଣ୍ଡ ମୋର ନଇଁ ଯାଉଛି ।

ଗୃହୁଁ ଗୃହୁଁ ଦୁଇ ବର୍ଷ ଦୁଇ ଦିନ ପରି କଟିଗଲା । ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ, ହସ କୋଳାହଳରେ ମୁଖରିତ ହଉଥାଏ । ସେହି ଦିନଟି ମୋ ପାଇଁ ଅବିସ୍ମରଣୀୟ । ହସ, ଆନନ୍ଦ ଭିତରେ ପଦାର୍ଥ ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିବାରୁ ସ୍ୱର୍ଣ୍ଣ ପଦକ ପୁରସ୍କାର ପାଇଲି । ଫଟୋ ଗ୍ରାଫର-ମାନେ ମୋ ଫଟୋ ନବା ପାଇଁ ଭିଡ଼ ଜମାଇଥାନ୍ତି ବନ୍ଧୁମାନେ ହସି ହସି କୁଣ୍ଢାଇ ପକାଉ ଥାନ୍ତି । ମୋ ଜୀବନରେ ସେଦିନଟି ଗୋଟିଏ ବଡ଼ ଆନନ୍ଦର ଦିନ ।

ଏମ୍ ଏସ୍ ସି ପାଶ୍ କରିବା ପରେ ଚାକିରି ଜୀବନର ଆରମ୍ଭ । ଓଡ଼ିଶା ସରକାରଙ୍କ ଅଧୀନରେ ରେଭେନ୍ସା କଲେଜରେ ଅଧ୍ୟାପକ ହେଲି । ବେଶ୍ ଭଲ୍ ଲାଗୁଥାଏ ଏ ଦିନଗୁଡ଼ିକ । ଦୁଇବର୍ଷ ଅଧ୍ୟାପକ ହବା ପରେ ସରକାରୀ ବୃତ୍ତି ପାଇ ଯୁକ୍ତରାଷ୍ଟ୍ର ଆମେରିକା ଗଲି । ଗବେଷଣା କରି ପି ଏଚ ଡି ପାଇବା ପାଇଁ ।

ପୂର୍ଣ୍ଣ ତିନିବର୍ଷ ଗବେଷଣା କରି ପଦାର୍ଥ ବିଜ୍ଞାନରେ ପି, ଏଚ, ଡି ଉପାଧି ପାଇଲି । ତାପରେ ଯୁକ୍ତରାଷ୍ଟ୍ର ଆମେରିକାରେ ଆହୁରି ତିନି ବର୍ଷ ରହିଲି । ବହୁତ ବିଦେଶ ବୁଲିଲି । ଆଉ ବିଦେଶରେ ରହିବାକୁ ଇଚ୍ଛା ହେଲାନି । ଫେରିଲି ସ୍ୱଦେଶକୁ ସେଇ ଚିର ପରିଚିତ କଟକ ସହରକୁ । ରେଭେନ୍ସା କଲେଜରେ ପଦାର୍ଥ ବିଜ୍ଞାନ ଅଧ୍ୟାପକ ହେଲି । ଡକ୍ଟର ମିଶ୍ର

Digitized by srujanika@gmail.com

ହିସାବରେ ସମସ୍ତଙ୍କ ପାଖରେ ପରିଚିତ ହେଲି । ପୁଣି ସେହି
ଦୁଃଖ ମୋର ହେଲା । ମୁଁ ଆମେରିକା ଯିବା ପୂର୍ବରୁ ଓଡ଼ିଶା
ସରକାର ମୋତେ ଯେତିକି ଦରମା ଦେଉଥିଲେ, ମୁଁ ଆମେରିକାରୁ
ଡକ୍ଟରେଟ୍ ପାଇ ଫେରିବା ପରେ ମଧ୍ୟ ସେହି ହାରରେ
ଏତେ ଅଳ୍ପ ଟଙ୍କାରେ ଚଳିବା ମୋ ପକ୍ଷରେ କଷ୍ଟକର ହେଲା ।
ଅଧ୍ୟାପକ ହୋଇ ସରକାରୀ ଚାକିରୀ କରି ଟ୍ୟୁସନ କରିବା
ଅପରାଧ । ତାପରେ ଗବେଷଣା କରିବାରେ ମୋର ଏତେ
ଆଗ୍ରହ ଯେ ମୋତେ ସମୟ ହୁଏନି ଅନ୍ୟ କିଛି ଖବର ବୁଝି-
ବାକୁ । କରଜ କରି ଚଳିବାରେ ଲାଗିଲି । ଭାବିଲି ଏକାଠି
ହିସାବ କରି ବର୍ଦ୍ଧିତ ହାରରେ ମୋତେ ଦରମା ଦେବେ ।
ଆଜି ପର୍ଯ୍ୟନ୍ତ ମିଳିଲାନି । ବଡ଼ ଦୁଃଖ ହେଉଥାଏ ଏ ଅଭାବ,
ଅନାଟନ ଜୀବନ ।

ଆମେରିକାରୁ ଫେରି ରେଭେନ୍‌ସା କଲେଜରେ ରହିବାର
ଛଅ ବର୍ଷ ହୋଇଗଲାଣି । କିନ୍ତୁ ମୋର ବାର୍ଷିକ ବର୍ଦ୍ଧିତ
ହାରରେ ଦରମା ଗଣ୍ଡାକ ମିଳୁନି । ସରକାରଙ୍କର ଏ ନୀତି
ଦୁର୍ବିସହ ହୋଇ-ଉଠୁଛି । ସବୁ ଦେଶରେ ଅଧ୍ୟାପକମାନଙ୍କୁ
ଶ୍ରେଷ୍ଠ ଆସନ ଦିଆଯାଉଥିବା ବେଳେ ଆମ ଦେଶର ଅଧ୍ୟାପକ-
ମାନଙ୍କ ଅବସ୍ଥା ଯେ କେଉଁଠି ରହିଛି, ତାହା କଳ୍ପନା କରି
ହୁଏନି । ମୋ ପରି ଯେ କେତେ ଅଧ୍ୟାପକ ଏପରି ଦୁରବସ୍ଥା
ଭୋଗୁଛନ୍ତି, କିଏ କହିବ, ସରକାରଙ୍କର ସୁଦୃଷ୍ଟି ଏ ଅଧ୍ୟାପକ-
ମାନଙ୍କ ଉପରେ କେବେ ପଡ଼ିବ । ଏମିତି ଦୁଃଖ-ଜୀବନରେ
ଛାତ୍ରମାନଙ୍କୁ କି ଶିକ୍ଷା ସେ ଦେବେ । ଆଜି ମଧ୍ୟ ଛାତ୍ରମାନେ
ଅଧ୍ୟାପକଙ୍କ ଏ ଦୁରବସ୍ଥା ଦେଖି ଭବିଷ୍ୟତରେ ସେମାନେ

Digitized by srujanika@gmail.com

ଅଧ୍ୟାପକ ଯେମିତି ନହେବେ, ସେଥିପାଇଁ ସଂକଳ୍ପ କଲେଣି ଏହା ଆମ ସରକାରଙ୍କର ଶିକ୍ଷା ବିଭାଗ ପ୍ରତି ଅବହେଳା ନୁହେଁ କି ?

ଏହି ଅଭାବ ଯୋଗୁ ଆଜି ପର୍ଯ୍ୟନ୍ତ ମୁଁ ବିବାହ କରି ନଥିଲି । ଜୀବନ ଯାକ ସଂଗ୍ରାମ କରି ଚାଲି ଆସିଲି, କିନ୍ତୁ ଆଜି ଆଉ ଇଚ୍ଛା ହେଉନି କି ଅଗ୍ରହ ହେଉନି ଏପରି ସଂଗ୍ରାମ ଭିତରେ ଚଳେଇବାକୁ । ଅବଶ୍ୟ ବିଦେଶ ଚାଲିଗଲେ ମତେ ପ୍ରଚୁର ଅର୍ଥ ମିଳିବ । କିନ୍ତୁ ନିଜ ଦେଶ ଛାଡ଼ି ଅନ୍ୟ ଦେଶରେ ଯାଇ ଶିକ୍ଷା ଦେବାକୁ ମୋର ଇଚ୍ଛା ନାହିଁ । ମୋ ଜୀବନରେ ବଡ଼ ଆଶା ଥିଲା ପାଠପଢ଼ି ମୁଁ ଜଣେ ମଣିଷ ପରି ମଣିଷ ହେବି । ସେତିକି ହୋଇ ପାରିଛି, ସେଇତିକି ମୋର ମନର ସାନ୍ତ୍ୱନା । ମୋର ନିଜର ହୋଇ କେହି ନାହିଁ । କଲେଜର ଛାତ୍ର ଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା, ସମସ୍ତେ ମୋର ନିଜର । ସେମାନଙ୍କ-ଠାରୁ ଆଜି ଚିର ବିଦାୟ ନେଉଛି । ଯଦି ମୋର ମୃତ୍ୟୁ ପରେ ସରକାର ଅଧ୍ୟାପକମାନଙ୍କୁ ଉଚିତ ଦରମା ଦେଇ ତାଙ୍କ ଦୁଃଖ ଦୂର କରନ୍ତି, ତେବେ ମୋର ଆତ୍ମା ଆର-ପୁରରେ ଥାଇ ଶାନ୍ତି ଲଭିବ । ଆଉ ବେଶି କିଛି ଲେଖିବାର ନାହିଁ । ଶେଷରେ ମୋର ଏତିକି ଅନୁରୋଧ ସରକାର ଶିକ୍ଷା ବିଭାଗ ପ୍ରତି ଦୃଷ୍ଟି ଦିଅନ୍ତୁ । ନହେଲେ ମୋପରି ଅନେକ ଅଧ୍ୟାପକ ଦୁଃଖର ତାଡ଼ନା ସହି ନପାରି ଆତ୍ମ ହତ୍ୟାର ଆଶ୍ରୟ ନେବେ । ଭିକ୍ଷୁଛି, ବିଦାୟ ନେଉଛି ଆଜି ମାନବ ସମାଜରୁ ଚିର ଦିନପାଇଁ । ଇତି ।

ଅଧ୍ୟାପକ —
ଡକ୍ଟର ଦେବପ୍ରସାଦ ମିଶ୍ର,

Digitized by srujanika@gmail.com

ଚିଠିପତ୍ର ସାରିବା ପରେ ଅଧ୍ୟାପକ ରଥଙ୍କ ଆଖିରୁ ଝରି ପଡ଼ିଲା ଟୋପା ଟୋପା ଲୁହ । ଅଦିନ ମେଘ ଖଣ୍ଡେ କେଉଁ ଆଡ଼ୁ ଆସି ବରଷି ଗଲା । ଯେପରି କ ଡ଼କ୍ଟର ମିଶ୍ରଙ୍କ ମୃତ୍ୟୁରେ ପ୍ରକୃତ କାନ୍ଦୁଛି । ଘଣ୍ଟା କଣ୍ଟା ଆଗକୁ ମାଡ଼ି ଚାଲିଲା । ରାସ୍ତା, ଘର, ବାହାର, ସବୁ ଲୋକଙ୍କ ହାତରେ ସେ ଦିନର ଖବର କାଗଜ । ସମସ୍ତଙ୍କ-ମନକୁ ବ୍ୟଥିତ କରୁଛି ଡ଼କ୍ଟର ମିଶ୍ରଙ୍କ ଆତ୍ମହତ୍ୟା ।

ଦିନ ବାରଟା, ଚାରିଆଡ଼ ନୀରବ । ରହି ରହି ମଝିରେ ମଝିରେ ଅସରାଏ ଲେଖାଏ ବରଷୁଛି ପାଣି । ଚାତକର ମନ ଖୁସି । ପିଲାମାନେ ମନ ଖୁସିରେ ଗୀତ ଗାଉଛନ୍ତି । କିନ୍ତୁ ଖୁସି ନାହିଁ ସ୍ୱପ୍ନାର ମନରେ । ଘର କଣରେ ପଡ଼ିଥିବା ଗୋଟାଏ ଖଟ ଉପରେ ଶୋଇ ରହିଥାନ୍ତି । ଅଖିରୁ ତାଙ୍କର ଲୁହ ଗଡ଼ି ମୁଣ୍ଡତଳ ତକିଅଟି ଭିଜି ଗଲାଣି । ଦେହ ମୁଣ୍ଡ ଅଯତ୍ନ । କେଉଁଆଡ଼କୁ ତାଙ୍କର ନଜର ନାହିଁ । ଭୁଲାଇ ଭୁଲାଇ ତାଙ୍କର ମନେ ପଡ଼ୁଛି ଡ଼କ୍ଟର ମିଶ୍ରଙ୍କ କଥା । ହଠାତ୍ ଏପରି ଆତ୍ମହତ୍ୟା କଲେ କାହିଁକି ? ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି ଆତ୍ମହତ୍ୟା କରିବା କଣ ଉଚିତ । ସ୍ୱପ୍ନାଙ୍କର ଚିନ୍ତା ରାଜ୍ୟରେ ବାଧା ସୃଷ୍ଟି କରି ଦାଣ୍ଡ ଦୁଆରେ ପୋଷ୍ଟମ୍ୟାନ ଡାକ ଉଠିଲା, ଚିଠି ନିଅନ୍ତୁ ଚିଠି ।

ସ୍ୱପ୍ନା ନିଜ ଲୁଗାପଟାକୁ ଧଜାଡ଼ି ନେଇ ଆଖିରୁ ଲୁହ ପୋଛି ଦାଣ୍ଡ କବାଟ ଖୋଲିଲେ । ପୋଷ୍ଟମ୍ୟାନ, ସ୍ୱପ୍ନାଦେବୀଙ୍କ ହାତକୁ ବଢ଼ାଇ ଦେଲା ଏକ ରେଜେଷ୍ଟ୍ରି ଚିଠି । ଚିଠିଟି ଧରି ଦାଣ୍ଡ କବାଟ ବନ୍ଦ କରି ସ୍ୱପ୍ନା ଦେବୀ ଫେରି ଆସିଲେ ଖଟ ଉପରକୁ । ଖଟ ଉପରେ ବସି ପଡ଼ି ଚିଠିଟିକୁ ଉରବର କରି

Digitized by srujanika@gmail.com

ଖୋଲିଲେ, ଚିଠିଟିର ଉପର ସମ୍ବୋଧନ ଟା ଦେଖି ଚମକି ପଡ଼ିଲେ । କିଏ ତାଙ୍କୁ ଏପରି ସମ୍ବୋଧନ କରିପାରେ ? ତରବର କରି ଚିଠିର ଶେଷ ପାଟିକୁ ଦେଖି ବସିଲେ ଲେଖା ଅଛି 'ଇତି' ତୁମର ଉତ୍କଳ ମିଶ୍ର । ସ୍ୱପ୍ନା ଦେବୀଙ୍କ ଆଖିରୁ ଝରି ପଡିଲା ଟୋପା ଟୋପା ଲୁହ । ଉତ୍କଳ ମିଶ୍ର ମୃତ୍ୟୁ ପୂର୍ବରୁ ତାହାଙ୍କ ଏପରି ସମ୍ବୋଧନ କଲେ ? ଉଦ୍ଦେଶ୍ୟ କଣ ? ଆଖିର ଲୁହକୁ ଶାଢ଼ୀ-ପଣତ କାନରେ ପୋଛି ନେଇ ଚିଠିଟିକୁ ପଢ଼ି ବସିଲେ । ନୀଳରଙ୍ଗର ପ୍ୟାଡ଼ ଉପରେ ଗୋଲ ଗୋଲ ଅକ୍ଷରରେ ଲେଖା ହୋଇଛି । — —

ମାନସୀ ସ୍ୱପ୍ନା,

ତୁମକୁ ଏ ଭଳି ସମ୍ବୋଧନ କରିବା ମୋ ଜୀବନରେ ପ୍ରଥମ । ତୁମକୁ କି କାହାକୁ ମଧ୍ୟ ଆଜି ପର୍ଯ୍ୟନ୍ତ ଏହିପରି ସମ୍ବୋଧନ ମୁଁ କରିନି, ତୁମକୁ ମୁଁ ମୋର ନିଜର କରି ନେଇଛି, ଆଜି ପର୍ଯ୍ୟନ୍ତ ମୁଁ ବିବାହ କରି ନଥିଲି । କିନ୍ତୁ ତୁମର ମନେଥିବ ସ୍ୱପ୍ନା, ଦିନେ ତୁମରି ପ୍ରଶ୍ନର ଉତ୍ତର ଦବାକୁ ଯାଇ କହିଥିଲି, ଯାହାକୁ ବିବାହ କରିବି, ମନେ ମନେ ଠିକ୍ କରି ନେଇଛି, କିନ୍ତୁ ତୁମକୁ ତାଙ୍କ ନାଁ କହିନଥିଲି । ସେ ଝିଅଟି କିଏ ଜାଣିଛ ? ସେ ହେଉଛି ମୋର ଚିର ଆଦରର ମାନସୀ ସ୍ୱପ୍ନା । କେବଳ ମାନସୀ ନୁହେଁ, କି ମୋର ପ୍ରେମର ପୂଜାରିଣୀ ନୁହେଁ, ସେ ମୋର ସାହାଯ୍ୟକାରିଣୀ ସେବାକାରିଣୀ ସ୍ୱପ୍ନା । ଅଜି ପର୍ଯ୍ୟନ୍ତ ତୁମକୁ ବିବାହ କରି ପାରିଲିନି, ସେଥିପାଇଁ ମୁଁ ବହୁତ ଦୁଃଖିତ । କିନ୍ତୁ ମନ ମୋର ଅନେକ ଦିନୁ ବିବାହ କରିଛି

Digitized by srujanika@gmail.com

ତୁମକୁ । ଏ ସବୁ ବିଷୟ ଶୁଣି ତୁମେ ବୋଧେ ଦୁଃଖ କରିବ ? କିନ୍ତୁ ଦୁଃଖ ତୁମ ପାଖରେ ଶୋଭା ପାଇବନି, ମୋର ସହକର୍ମିଣୀ ତୁମେ ? ଧୈର୍ଯ୍ୟ ଧରି କର୍ମକରି ଯାଅ ଭଗବାନ ତୁମକୁ ସାହାଯ୍ୟ କରିବେ ।

ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ଆମେ ଏକାଠି ରିସର୍ଚ୍ଚ କଲେ ଗୋଟିଏ ତୁମରେ ଦିନ ସବୁଠାରୁ ବାଛି ବସିବାର ନଥିଲା । ତୁମଠାରେ ଦୁର୍ବଳତା ଦିନେହେଲେ ଦେଖି ପାରିନ ସବୁଦିନ ତୁମେ ମତେ ଶିକ୍ଷକର ଆସନ ଦେଇ ଆସିଛ । ମୁଁ ମଧ୍ୟ ସବୁଦିନ ଭାବିଛି ତୁମେ ମୋର ଛାତ୍ରୀ । ଦେଖି ପାରିଛି ତୁମର ସଚ୍ଚୋଟତାର ପରାକାଷ୍ଠା ଯାହା କି ଆଧୁନିକ ଶିକ୍ଷିତା ନାରୀମାନଙ୍କର ପାଖରେ ଖୁବ୍ କମ୍ ଦେଖିବାକୁ ମିଳେ । ବାସ୍ତବିକ ତୁମେ ନିଜର ସଚ୍ଚୋଟ ରକ୍ଷାକରି ଚିରକୁମାରୀ ରହି ପାରିବ, ସେ ଆଶା ମୋର ଅଛି । ସେଇଥିପାଇଁ ତୁମକୁ ମୁଁ ନିଜର କରି ନେଇଛି । ମୋର ଅନୁରୋଧ ନିଶ୍ଚୟ ତୁମେ ଗବେଷଣା କରି, ବିଜ୍ଞାନ ଭିତରେ ନିଜକୁ ହଜାଇ ଦେବ । ମୋର ଅନୁରୋଧ ତୁମେ ଏତିକି ରଖିବ, ସ୍ୱପ୍ନା, ଜୀବନ ଥିବାଯାଏ ରିସର୍ଚ୍ଚ କରିବ, ଯେଉଁ ବିଜ୍ଞାନ ଭିତରେ ତୁମର ଜୀବନ ବିତୁ । ଆଜି ମଧ୍ୟ ବିବାହ କରିବନି । ମୋର ଦୃଢ଼ ଆଶା ତୁମେ ନିଶ୍ଚୟ ଅନୁରୋଧ ରଖିବ ।

ହଁ ଆଜି ଗୋଟିଏ କଥା ସ୍ୱପ୍ନା, ଓଡ଼ିଶାରେ ଗୋଟିଏ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ୍ ଗଢ଼ିବା ପାଇଁ ମୋର ବହୁତ ଇଚ୍ଛାଥିଲା । ଓଡ଼ିଶାର ଛାତ୍ରମାନେ ଗବେଷଣା କରିବା ପାଇଁ ନାନା ପ୍ରକାର ଅସୁବିଧା ଭୋଗୁଛନ୍ତି । ଗବେଷଣା କରିବାକୁ ଇଚ୍ଛାଥିଲେ ମଧ୍ୟ

Digitized by srujanika@gmail.com

ସ୍ଥାନ ଅଭାବରୁ କହିପାରୁ ନାହିଁ। ଜୀବନର ସମସ୍ତ ବେଳ-ଟାରକୁ ଯଦି ଏହି କାର୍ଯ୍ୟରେ ଲଗାଇ ପାରନ୍ତି ତେବେ ଓଡ଼ିଶାର ଶ୍ରୁଦ୍ଧମାନଙ୍କର ଉପକାର ହୁଅନ୍ତା । ଏହା କଳ୍ପନା କରିଥିଲି ମୁଁ, କିନ୍ତୁ ତୁମେ ଚେଷ୍ଟା କରି ବାସ୍ତବତାରେ ପରିଣତ କରିବ ।

ମୋର ଯାହା କିଛିଅଛି, ସେ ସମସ୍ତ ମୁଁ ତୁମ ନାଁରେ ଉଇଲ୍ କରି ଦେଇଛି । ଆଜି ମଧ୍ୟ ସରକାରଙ୍କ-ଠାରୁ ଅନେକ ଟଙ୍କା ପାଇବାର ଅଛି । ସେ ସମସ୍ତ ଟଙ୍କା ତୁମେ ଯେପରି ପାଇବ, ତାର ମଧ୍ୟ ବନ୍ଦୋବସ୍ତ କରି ଦେଇଛି । ମୋର ସମସ୍ତ ଟଙ୍କା ତୁମେ ଗ୍ରହଣ କରିବ । ରିସର୍ଚ୍ଚ ପେପର୍ ଗୁଡିକ ଯତ୍ନ ସହକାରେ ରଖିବ । ତୁମେ ମୋର ହୋଇ ସବୁଦିନ ରହିବ । ଆଉ ବେଶି କଣ ଲେଖିବ ? ଶେଷରେ, ମୋର ସ୍ନେହ ନେବ । ଏତିକରେ ବିଦାୟ ନଉଛି । ତୁମ ମାଆଙ୍କୁ ମୋର ଭକ୍ତି ପୂର୍ଣ୍ଣ ପ୍ରଣାମ ଜଣାଇବ । ବିଦାୟ ମାନସୀ ସ୍ୱପ୍ନା ମୋର । ଇତି ।

ତୁମର —

❋ ଚିର ପରିଚିତ ❋

ଉତ୍କର ମିଶ୍ର

ଶଠି ପଡ଼ି ସାରିଲା ବେଳକୁ ସ୍ୱପ୍ନା ଦେବୀଙ୍କ ଆଖିରୁ ଛୁଟୁଥାଏ ଧାରା ଶ୍ରାବଣୀର ବନ୍ୟା । ସେ ଲୁହରେ ଚିଠିଟି ଓଦା ହୋଇ ଯାଉଥାଏ । ମୁହଁକୁ ଧୋଇ ଦେଇ ଫେରି ଆସିଲେ ସ୍ୱପ୍ନା ଦେବୀ । ଚିଠିଟିକୁ ନିଜ ସୁଟକେଶ୍ ଭିତରେ ସାଇତି

Digitized by srujanika@gmail.com

ରଖିଲେ । କାନ୍ଥରେ ଟଙ୍ଗା ହୋଇଥିବା ଡ଼କ୍ଟର ମିଶ୍ରଙ୍କର ଫଟୋଟିକୁ କାଢ଼ିଆଣି ଟେବୁଲ ଉପରେ ସଜାଡ଼ି ରଖିଲ । ଡ଼କ୍ଟର ମିଶ୍ରଙ୍କ ଫଟୋ କଡ଼ରେ ନଜର ଗୋଟିଏ ଗ୍ରୁପ ଫଟୋ ଆଣି ରଖିଲେ । ଦୌଡ଼ଯାଇ ସଜ ଫୁଟା ଗୋଲାପ କେତୋଟି ଆଣି ସଜାଇ ଦେଲେ ଡକ୍ଟର ମିଶ୍ରଙ୍କର ଫଟୋଟିକୁ । ଫଟୋଟିକୁ ଚାହିଁ ବସି ମନକୁ ମନ କହୁ ଉଠୁଥାନ୍ତି ଆଜଠାରୁ ମୁଁ ଶପଥ କରୁଛି ଭବିଷ୍ୟତରେ କେବେ ବିବାହ କରିବିନି । ତୁମର ଶକ୍ତି ମୋ ଜୀବନ ପଥରେ ସହାୟ ହେଉ, ମୋର କର୍ମମୟ ଜୀବନରେ ତୁମର ଆଦର୍ଶ ମୋତେ ଅନୁପ୍ରାଣିତ କରୁ ଏହା ସର୍ବଶକ୍ତିମାନ ଈଶ୍ୱରଙ୍କ ଠାରେ ମୋର ପ୍ରାର୍ଥନା । ତୁମର କଥାର ମୁଁ ଯେପରି ବ୍ୟତିକ୍ରମ ନକରେ ଏହା କହି ଡ଼କ୍ଟର ମିଶ୍ରଙ୍କ ଫଟୋ ତଳେ ମଥା ନୁଆଁଇଲେ । ଆଖିରୁ ତାଙ୍କର ଅମାନିଆ ଅଶ୍ରୁ ଝରି ପଡ଼ୁଥାଏ । ଯାହାଙ୍କୁ ସ୍ୱାମୀ ଭାବରେ ପାଇ ସେ ଆଜ ଗୌରବ ଅନୁଭବ କରୁଥାନ୍ତେ, ସେ ଆଜ ନାହାନ୍ତି । ରହିଯାଇଛନ୍ତି କେବଳ ସ୍ମୃତି । ସେହି ସ୍ମୃତି ତାଙ୍କ ଜୀବନର ସହଚରୀ ହେବ । ଡକ୍ଟର ମିଶ୍ର କହିଥିଲେ ବିଜ୍ଞାନର ଛାତ୍ରୀ ଦୁଃଖରେ ଭାଙ୍ଗି-ପଡ଼ିବା ଉଚିତ ନୁହେଁ । ତାଙ୍କ ଆଗରେ ଯେ ମହାନ କର୍ତ୍ତବ୍ୟ ରହିଛି । ଡକ୍ଟର ମିଶ୍ରଙ୍କ ଅଧୁରା ସ୍ୱପ୍ନ ହେବା ନିଜକୁ ବିଜ୍ଞାନ ଭିତରେ ହଜାଇ ଦେବେ । ଫେରି ଆସିଲେ ସେ ନିଜ ଚେୟାର ଟେବୁଲ ପାଖକୁ । ଟେବୁଲଟି ବିଜ୍ଞାନ ପୁସ୍ତକରେ ଭର୍ତ୍ତି ହୋଇଛି । ଚେୟାର ଉପରେ ବସିପଡ଼ି ପୁସ୍ତକ ଆଡ଼େ ଚାହିଁ ରହିଲେ, ମୁଖ-ମଣ୍ଡଳ ତାଙ୍କର ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଓ ଆଖିରୁ ବାହାରୁଥାଏ ଏକ ଉଜ୍ଜ୍ୱଳ ଜ୍ୟୋତି, ଯେପରିକି ସେ ସେହି ବିଜ୍ଞାନରୁ ଆଲୋକ ବାହାର କରିବେ । ମୁହିଁ ଉପରେ

Digitized by srujanika@gmail.com

ସମସ୍ତ ପରେ କବାଟଟିକୁ ଆସି ଖୋଲିଲେ ଜଣେ ପ୍ରୌଢ଼ା ନାରୀ । କାନ୍ଧରେ ତାଙ୍କର ଏକ ଦେଢ଼ ବର୍ଷର ଶିଶୁ । କବାଟ ଖୋଲି ଦେଇ ପ୍ରୌଢ଼ା ଜଣକ କହିଲେ, "ତୁମେ ଦୁଇଦିନ ହେଲା କୁଆଡେ ଗଲ ? ଭିତରକୁ ଆସୁନ, ବାହାରପଟରେ ଏମିତି ଥକା ହୋଇ ଠିଆହେଲ କାହିଁକି ?"

ଭିତରକୁ ଆସ୍ତେ ଆସ୍ତେ ଯାଇ ବସି ପଡ଼ିଲେ ଆଗନ୍ତୁକ । ମୁହଁରେ ତାଙ୍କର ଭାଷା ଆସୁନଥାଏ କଣ କହିବେ ସେ ।

ପୁଣି ଥରେ ପ୍ରୌଢ଼ାଜଣକେ କହିଲେ, "ଏମିତି ଥକା-ହୋଇ ବସିଲ କାହିଁକି ? ଦେହରୁ ପୋଷାକ ବାହାର କର ।"

ଏଥର ଆଉ ଆଗନ୍ତୁକ ଚୁପ୍ ହୋଇ ବସି ପାରିଲେନି । ଆସ୍ତେ କହିଲେ, "କ୍ଷମା କରିବେ ଆପଣଙ୍କୁ ମୁଁ ନିଜ ପରିଚୟ ଦେବାକୁ ଭୁଲି ଯାଇଛି । ଆପଣଙ୍କର ସ୍ୱାମୀ ନୁହେଁ କି ଚୋର କି ତସ୍କର ନୁହେଁ । ମୁଁ ଦୁଇଦିନ ହେଲା ଆପଣଙ୍କ ଘରର ଠିକଣା ଖୋଜି ବୁଲୁଥିଲି । କିନ୍ତୁ ଘର ପାଉ ନଥିଲି । ମୋତେ ଆପଣ ଭୟ କରନ୍ତୁନି ? ମୁଁ ଆପଣଙ୍କର ଅନିଷ୍ଟ କରିବାକୁ ଆସିନି । ଆପଣଙ୍କ ସ୍ୱାମୀଙ୍କର ଶତ୍ରୁ ନୁହେଁ, ଆପଣ ମତେ ବିଶ୍ୱାସ କରନ୍ତୁ । ମୁଁ ଆପଣଙ୍କର ଶୁଭାକାଂକ୍ଷୀ ।" ଏତିକ କହି ଛଳ ଛଳ ଆଖିରେ ଆଗନ୍ତୁକ ଜଣକ ଗୃହିଣୀଙ୍କ ହାତରେ ଖଣ୍ଡିଏ କାଗଜ ବଢ଼ାଇ ଦେଲେ ।

ପ୍ରୌଢ଼ା କାଗଜଟିକୁ ହାତରେ ନେଇ କାନ୍ଧରେ ପକାଇ-ଥିବା ଶିଶୁଟିକୁ ଘର ଭିତରେ ଶୁଆଇ ଫେରି ଆସିଲେ ।

Digitized by srujanika@gmail.com

ଆସି ପଡ଼ୁଥାଏ ଅଲଗା ବାଳଗୁଡ଼ାକ । କେଉଁଅଡ଼କୁ ନଜର ନାହିଁ ସ୍ୱପ୍ନ ଦେଖାଙ୍କର । ନଜର ଅଛି ସେହି ମୋଟା ମୋଟା ପୁସ୍ତକ ଉପରେ । × × × ×

କଟକ ସହରର ରସ୍ତା । ଯିଏ ଦେଖିଥିବ, ସେ ଜାଣିଥିବ, ଯେ ନଦେଖିଥିବ ସେ କଳ୍ପନା କରି ପାରିବନି କଟକ ସହରର ରାସ୍ତା ପୁଣି ଏତେ ଅପରିଷ୍କାର । ବର୍ଷା ଟିକିଏ ହୋଇଗଲେ ସେ ରାସ୍ତା ଗାଁ ମାଟିବନ୍ଧଠାରୁ ଅଧିକ ପଙ୍କ ହୋଇଉଠେ । ରାସ୍ତାଟି ଖାଲ ଢ଼ିପ ହୋଇଥିବା ଯୋଗୁ ରାସ୍ତା ସାରା ପାଣି ଜମିଛି । ରାସ୍ତା କଡ଼-ମାନଙ୍କରେ ଅଳିଆ ଗଦା ଜମା ହୋଇଛି । ଚାରିଆଡ଼େ ପଚା ନର୍ଦ୍ଦମାର ଗନ୍ଧ । ନର୍ଦ୍ଦମା ସଫା ହେଉ ନଥିବାରୁ ନର୍ଦ୍ଦମାର ପାଣି ରାସ୍ତା ଉପରକୁ ଉଠି ଆସୁଛି । ଏ ସବୁ ଦେଖିଲେ କଟକ ସହରରେ ମ୍ୟୁନିସିପାଲିଟି ଥିଲାପରି ମନେ ହୁଏନି । ଏଇ ପୁଣି ଓଡ଼ିଶାର ବଡ଼ ନଗରୀ, ଯେଉଁଠିକି ଆବର୍ଜନା ଏଠି ଠୁଳ ହୋଇଛି ।

ରାତି ଆଠଟା, ଅଳ୍ପ ସମୟ ପୂର୍ବରୁ ଅସରାଏ ବର୍ଷା ହୋଇ ଯାଇଛି, ରାସ୍ତାରେ ଜମା ହୋଇଛି କାଦୁଅ ପାଣି, ବିଜୁଳିବତୀର ଆଲୋକରେ ଲୁଚିଯାଇଛି ଜମା ଅନ୍ଧାର ।

ଦୋଳମୁଣ୍ଡେଇ ଛକର ବାଁ ପଟ ରାସ୍ତା କଡ଼ରେ ଏକ ଟାଇଲ୍ ଛପରଘର, ଘର କବାଟଟି ଭିତର ପଟୁ ବନ୍ଦ ଅଛି, ଝରକା ବାଟେ ବାହାରକୁ ଦିଶୁଛି ଲଣ୍ଠନର କ୍ଷୀଣ ଆଲୋକ । ସେହି ଘରର ପିଣ୍ଡା ଉପରକୁ ଉଠିଲେ ଜଣେ ଲୋକ, ଦେହଟି ତାଙ୍କର ବର୍ଷାତି ପୋଷାକରେ ଆବୃତ, ଲୋକ ଜଣକ କବାଟଟିର କଡ଼ାଟିକୁ ଖଡ଼୍ ଖଡ଼୍ କରିବାରେ ଲାଗିଲେ, କିଛି

Digitized by srujanika@gmail.com

ସମସ୍ତ ପରେ କବାଟଟିକୁ ଆସି ଖୋଲିଲେ ଜଣେ ପ୍ରୌଢ଼ା ନାରୀ । କାନ୍ଧରେ ତାଙ୍କର ଏକ ଦୁର୍ଘଟ ଶିଶୁ । କବାଟ ଖୋଲି ଦେଇ ପ୍ରୌଢ଼ା ଜଣକ କହିଲେ, "ତୁମେ ଦୁଇଦିନ ହେଲା କୁଆଡେ ଗଲ ? ଭିତରକୁ ଆସୁନ, ବାହାବଟାରେ ଏମିତି ଥକା ହୋଇ ଠିଆହେଲ କାହିଁକି ?"

ଭିତରକୁ ଆସ୍ତେ ଆସ୍ତେ ଯାଇ ବସି ପଡ଼ିଲେ ଆଗନ୍ତୁକ । ମୁହଁରେ ତାଙ୍କର ଭାଷା ଆସୁନଥାଏ କଣ କହିବେ ସେ ।

ପୁଣି ଥରେ ପ୍ରୌଢ଼ାଜଣକ କହିଲେ, "ଏମିତି ଥକା-ହୋଇ ବସିଲ କାହିଁକି ? ଦେହରୁ ପୋଷାକ ବାହାର କର ।"

ଏଥର ଆଉ ଆଗନ୍ତୁକ ଚୁପ୍ ହୋଇ ବସି ପାରିଲେନି । ଆସ୍ତେ କହିଲେ, "କ୍ଷମା କରିବେ ଆପଣଙ୍କୁ ମୁଁ ନିଜ ପରିଚୟ ଦବାକୁ ଭୁଲି ଯାଇଛି । ଆପଣଙ୍କର ସ୍ୱାମୀ ନୁହେଁ କି ଘରର କେହି ନୁହେଁ । ଦୀର୍ଘ ତିନିଦିନ ହେଲା ଆପଣଙ୍କ ଘରର ଠିକଣା ଖୋଜି ବୁଲୁଥିଲି । କିନ୍ତୁ ଘର ପାଉ ନଥିଲି । ମୋତେ ଆପଣ ଭୟ କରନ୍ତୁନି ? ମୁଁ ଆପଣଙ୍କର ଅନିଷ୍ଟ କରିବାକୁ ଆସିନି । ଆପଣଙ୍କ ସ୍ୱାମୀଙ୍କର ଶତ୍ରୁ ନୁହେଁ, ଆପଣ ମତେ ବିଶ୍ୱାସ କରନ୍ତୁ । ମୁଁ ଆପଣଙ୍କର ଶୁଭକାଂକ୍ଷୀ ।" ଏତିକି କହି ଛଳ ଛଳ ଆଖିରେ ଆଗନ୍ତୁକ ଜଣକ ଗୁରୁଭଙ୍ଗ ହୋଇଥିବା ଖଣ୍ଡିଏ କାଗଜ ବଢ଼ାଇ ଦେଲେ ।

ପ୍ରୌଢ଼ା କାଗଜଟିକୁ ହାତରେ ନେଇ କାନ୍ଧରେ ପକାଇ-ଥିବା ଶିଶୁଟିକୁ ଘର ଭିତରେ ଶୁଆଇ ଫେରି ଆସିଲେ ।

Digitized by srujanika@gmail.com

ଲଣ୍ଠନଟିକୁ ଭଲକରି ଜାଳି କାଗଜଟିକୁ ଖୋଲି ପଢ଼ି ବସିଲେ । ଏ ଯେ ତାଙ୍କ ସ୍ୱାମୀଙ୍କ ହାତଲେଖା ଚିଠି, କ'ଣ ଲେଖିଛନ୍ତି, ଆଗ୍ରହ ସହକାରେ ପଢ଼ି ବସିଲେ ।

ସ୍ନେହମୟୀ ସୁନୁ,

ତୁମେ ଏ ଚିଠି ପାଇଲା ବେଳକୁ ମୁଁ ତୁମ ପାଖରୁ ବହୁତ ଦୂରରେ ଥିବି । ଯାହା କି ତୁମେ କେବେ କଳ୍ପନା କରି ପାରି ନଥିବ, ସେଇଆ ମୁଁ ଆଜି କରି ଯାଉଛି । ଚିର ଆଦରର ସୁନୁ ମୋର, ତୁମରି ସ୍ନେହ ପୂର୍ଣ୍ଣ ଭକ୍ତିର ଅର୍ଘ୍ୟରେ ମୋ ଦୋଷକୁ ଧୋଇ ଦେବ । ଅଭିଶାପ ଦବନି ସୁନୁ, ତୁମକୁ ଏ ଦୁଃଖ ଦଉଛି ବୋଲି । ମୋର ପ୍ରତିମୂର୍ତ୍ତି ପିଲାମାନଙ୍କୁ ଚାହିଁ । ତୁମେ ତ ଥାଙ୍କର ସବୁ ।

ଆଦରର ପିଲାମାନଙ୍କୁ ତୁମ ପାଖରେ ଛାଡ଼ି ଯାଉଛି । ସେମାନଙ୍କୁ ମଣିଷ କରିବା ଭାର ତୁମ ଉପରେ । ଅଉ ମଧ୍ୟ କେତୋଟି ଅନୁରୋଧ କରି ଯାଉଛି ସେଗୁଡ଼ିକ ଚଦ୍ଦେନ ମନରେ ରଖି କର୍ମ କ୍ଷେତ୍ରରେ ଆଗେଇ ଚାଲିବ । ଭୁଲ ବୁଝିବନି ମୋତେ ।

ତୁମେ ତ ଜାଣିଛ ମୁଁ ଦୁର୍ନୀତିକୁ ଘୃଣା କରୁଥିଲି । ଆଉ ସେଇ ଘୃଣା କରିବା ଯୋଗୁ ଆଜି ମୁଁ ପଥର ଭଙ୍ଗାଳି । ମୋ ଜୀବନରେ ମୁଁ ଘୁଷ ଲାଞ୍ଚ, ଧପ୍ପାବାଜି, ବିଶ୍ୱାସଘାତକତା କେବେ କରିନି । ସେଇଥିପାଇଁ ଜୀବନରେ ଉଚ୍ଚ ପଦସ୍ଥ କର୍ମଚାରୀ ହୋଇ ପାରିଲିନି । ଭଲ କରି ମୁଠାଏ ଖାଇବାକୁ ପିଲାମାନଙ୍କୁ ଦେଇ ପାରିଲିନି । ତୁମ ପାଇଁ ଖଣ୍ଡେ ଶାଢୀ, କି ମୁଠାଏ ଚୂଡ଼ି

Digitized by srujanika@gmail.com

ମୁଁ କଣିଦେଇ ପାରିଲିନି । ସୁନୁ ମୋ ଉପରେ ରାଗିବନି । ଛିଣ୍ଡା ପିନ୍ଧି, ଉପାସରେ ରହିଲେ ମଧ୍ୟ ଶାନ୍ତିଅଛି । କିନ୍ତୁ ପରର ଧନ ଲୋଭକରି ଖିଆ ପୁଆଖାଇ ପାଟଶାଢ଼ୀ ପିନ୍ଧିବାରେ ଶାନ୍ତି ନାହିଁ । ମୋର ଆଶା ମୋ ଆଦର୍ଶକୁ ତୁମେ ବଜାୟ ରଖିବ । ସତ୍‌ପଥରେ ପିଲମାନଙ୍କୁ ଆଗେଇ ନବ । ଯେପରି କି ମୋ ପିଲମାନେ ଭବିଷ୍ୟତରେ ଉଚ୍ଚପଦସ୍ଥ କର୍ମଚାରୀ ହୋଇ ଏ ଦେଶ-ଟାକୁ ଶୋଷଣ ନକରନ୍ତି । ମୋର ଦୃଢ଼ ବିଶ୍ୱାସ, ମୁଁ ଯେଉଁ ପଥରେ ଚାଲୁଥିଲି, ମୋ ପିଲମାନେ ଠିକ୍ ସେହି ବାଟେ ହିଁ ଯିବେ । କେବଳ ତାଙ୍କୁ ବାଟ ବତାଇବା ଦାୟିତ୍ୱ ତୁମ ଉପରେ ।

ସୁନୁ, ତୁମେ କ'ଣ ଭାବୁଛ ମୁଁ ତୁମକୁ କେବଳ ଚଳାଇ ନପାରିବାରୁ ଆତ୍ମହତ୍ୟା କଲି ? ତା ନୁହେଁ । ଆମ ସାହେବ ମତେ ଫାନ୍ଦରେ ପକାଇ ହାଇକୋର୍ଟରୁ ରିଟ୍ ଉଠାଇ ଆଣିଲେ, ଆଉ ମୋ ସହିତ କଲେ ଏକ ଭୟଙ୍କର ବିଶ୍ୱାସ ଘାତକତା । ଆଜି ମୁଁ ମୁକ୍ତ କଣ୍ଠରେ କହୁଛି ବଡ଼ ସାହେବଙ୍କର ବିଶ୍ୱାସ ଘାତକତା ଲାଗି ଅଜ ମୁଁ ଆତ୍ମହତ୍ୟା କରୁଛି । ମରିଯିବ ସତ୍ୟ, କିନ୍ତୁ ବଞ୍ଚିଥିବା ପର୍ଯ୍ୟନ୍ତ ଅନ୍ୟାୟର ପାଦ ମାଡ଼ିଲିନି । ସାମାନ୍ୟ ଓଭରସିଅର ମୁଁ, ତଥାପି ଅଜ ବଡ଼ ସାହେବ ଭାବନ୍ତୁ, ସତ୍ୟ ନ୍ୟାୟରେ ମୁଁ ପରାସ୍ତ ହେଲିନି । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ଅନ୍ୟାୟ, ମିଛ, ଲାଞ୍ଚ ବିରୁଦ୍ଧରେ ସଂଗ୍ରାମ କରି ଆସିଲି । ସେଇ ମୋର ସାନ୍ତ୍ୱନା ଓ ଗୌରବ ।

ମୋ ଜୀବନରେ ଗୋଟେ ବଡ଼ ବହୁତ ଘଟଣା ଘଟିଗଲା । ବିନା କାରଣରେ ଚାକିରିରୁ ସସ୍‌ପେଣ୍ଡ ହେଲି । ଭାବିଥିଲି,

Digitized by srujanika@gmail.com

ହେବେ ନା ହେବେ ସତ୍ୟର ବିଚାର ହେବ । କିନ୍ତୁ ଏ ପର୍ଯ୍ୟନ୍ତ ଅପେକ୍ଷା କରି କିଛି ହେଉନି । ଆତ୍ମହତ୍ୟା ମହାପାପ, ତଥାପି ତାହାର ଆଶ୍ରୟ ମୁଁ ଆଜି ନେଉଛି ।

କିନ୍ତୁ ସୁନୁ, ତୁମେ ଧୈର୍ଯ୍ୟଧରି ଅପେକ୍ଷା କରିବ । ସତ୍ୟ, ନ୍ୟାୟ, ଧର୍ମର ବିଚାର ପାଇଁ ଭଗବାନ ତୁମକୁ ସହାୟ ହେବେ । ତୁମେ ତୁମ ସ୍ୱାମୀର ପ୍ରତିଜ୍ଞାରେ ଅଟଳ ରହିବ । ସରକାରୀ ଦପ୍ତରରେ ଯଦି ସତ୍ୟର ବିଚାର ନ ହୁଏ, ତେବେ ଭଗବାନ ନିଶ୍ଚୟ ବିଚାର କରିବେ ।

ଅଉ ବେଶୀ କ'ଣ ଲେଖିବି ସୁନୁ, ସବୁଦିନ ପାଇଁ ତୁମକୁ ଛାଡ଼ି ଯାଉଛି । ପିଲାମାନଙ୍କୁ ଶେଷଥର ପାଇଁ ମୋର ସ୍ନେହ ଦେବ । ମୋର ଆଶା, ତୁମେ ଧୈର୍ଯ୍ୟ ଧରି ପିଲାମାନଙ୍କୁ ମଣିଷ କରିବ । ଆଜି ଏତିକିରେ ଚିରଦିନ ପାଇଁ ତୁମଠାରୁ ବିଦାୟ ନେଉଛି । ମୋ ମୃତ୍ୟୁ ପାଇଁ କେହି ଦାୟୀ ନୁହନ୍ତି । ଦାୟୀ ହେଉଛି ମୋ ନିଷ୍ଠାପର କର୍ମ ସାଧନା ।

॥ ଇତି ॥ ତୁମର—ମୁଁ ।

ଚିଠିଟି ପଢ଼ୁ ପଢ଼ୁ ପ୍ରୀତିଙ୍କ ଆଖିରୁ ଝରି ପଡ଼ୁଥାଏ ଟୋପା ଟୋପା ଲୁହ । ଲୁହରେ ଚିଠିଟି ପୁରାପୁରି ଓଦା ହୋଇଗଲାଣି ପ୍ରୀତିଙ୍କର ସେ ସବୁକୁ ନଜର ନାହିଁ । ଚିଠିଟିକୁ ମୁହଁରେ ଜାକୁଡ଼ି ଧରି ଭଇଁ ଭଇଁ ହୋଇ କାନ୍ଦିବାକୁ ଲାଗିଲେ ।

Digitized by srujanika@gmail.com

ପ୍ରୌଢ଼ାଙ୍କ କାନ୍ଦ ଦେଖି ଯୁବକ ଜଣକେ ପାଖକୁ ଆସି କହିଲେ, "ଆପଣ କାନ୍ଦ ମୁଣ୍ଡ ପିଟିଲେ କ'ଣ ସନାତନ ବାବୁ ଆଉ ଫେରି ଆସିବେ ? ଧୈର୍ଯ୍ୟ ଧରି ସବୁ ସହି-ଯିବାକୁ ପଡ଼ିବ । ସନାତନ ବାବୁ ଆପଣଙ୍କୁ ଯାହା ସବୁ କହି ଯାଇଛନ୍ତି, ତାଙ୍କୁ ଠିକ ଭାବରେ ପାଳନ କରିବା ଆପଣଙ୍କର କର୍ତ୍ତବ୍ୟ । ଆପଣଙ୍କ ପିଲମାନଙ୍କ ପାଇଁ ଆପଣଙ୍କୁ ବଞ୍ଚି ରହିବାକୁ ପଡ଼ିବ ।"

ପ୍ରୌଢ଼ା ଆଖିରୁ ଲୁହ ପୋଛି ନେଇ ଯୁବକଙ୍କୁ ଚାହିଁ ପଚାରିଲେ, "କିଏ ତୁମେ ? ତୁମର ପରିଚୟ ? ତୁମେ କେଉଁଠାରୁ ଏ ଚିଠି ପାଇଲ ?"

ପ୍ରୌଢ଼ାଙ୍କ ପ୍ରଶ୍ନ ଶୁଣି ଯୁବକ ଜଣକ ଆଖିରେ ଭରି ରହିଥିବା ଲୁହକୁ ରୁମାଲରେ ପୋଛି ନେଇ, ନେଇ କହିଲେ ମୋ ନାଁ ସୁମନ୍ତ ମିଶ୍ର । ଆମଘର ବାଲେଶ୍ୱର ପାଖରେ ଏକ ମଫସଲରେ । ମୋର ନିଜର ବୋଲି ଦୁନିଆରେ କେହି ନାହାଁନ୍ତି । ମୁଁ ଚାକିରି କରେନ । ସତ୍‌ପଥରେ ଥାଇ ଯେତିକ ରୋଜଗାର କରେ, ସେତିକ ମୋର ଗୋଟିଏ ପେଟ ପାଇଁ ଯଥେଷ୍ଟ । ମୁଁ ତିନ ଚାରିଦିନ ତଳେ ସନ୍ଧ୍ୟା ସମୟରେ କାଠଯୋଡି କୂଳରେ ବୁଲୁଥିବା ବେଳେ ସନାତନ ବାବୁ ଆସି ମୋ ସହିତ କଥାବାର୍ତ୍ତା ହେଲେ । କିଛି ସମୟ କଥାବାର୍ତ୍ତା ପରେ ସେ ମୋତେ ଏ ଚିଠି ଦୁଇଖଣ୍ଡି ବଢ଼ାଇ ଦେଇ କହିଲେ ତୁମେ ଏଇଠାରେ ବସିଥାଅ, ମୁଁ ଆସୁଛି । ଏହା କହି ସେ କିଛି ଦୂରଯାଇ ବନ୍ଧ ଉପରୁ ନଦୀର ଅତଳ ଗର୍ଭକୁ ଡେଇଁ ପଡିଲେ । ମୁଁ ତାଙ୍କ କଥାବାର୍ତ୍ତାରୁ ଜାଣିପାରି ନଥିଲି ଯେ ସେ ଆତ୍ମହତ୍ୟା କରିବେ ।

Digitized by srujanika@gmail.com

ମୁଁ କିଛି କରି ପାରିଲିନି । ନଦୀର ପ୍ରଖର ସ୍ରୋତ ତାଙ୍କୁ ଭସାଇ ନେଲା । ମୋ ଆଖି ଆଗରେ ସନାତନ ବାବୁ ଆତ୍ମହତ୍ୟା କଲେ ଅଥଚ ମୁଁ କିଛି କରି ପାରିଲିନି, ଏହାଠାରୁ ବଳି ଆଉ ଦୁଃଖର କଥା କ'ଣ ଥାଇପାରେ । ଏ ଚିଠିଟି ନେଇ ଦୀର୍ଘ ତିନିଦିନ ହେଲା ସହର ସାରା ବୁଲୁଛି, କିନ୍ତୁ ଘର ପାଉନଥିଲି । ଆପଣଙ୍କ ଠାରୁ ବୟସରେ ଅନେକ ସାନ, ଆଉ ମଧ୍ୟ ମୋର କେହି ନାହାଁନ୍ତି । ଆପଣ ମୋତେ ସାନଭାଇ ବୋଲି ଭାବନ୍ତୁ । ମୁଁ ଯଦି ସାହାଯ୍ୟ କରି ଆପଣଙ୍କର କିଛି ଉପକାର କରି ପାରିବି, ତେବେ ନିଜକୁ ଧନ୍ୟ ମନେ କରିବି ।

ସୁମନ୍ତଙ୍କ କଥା ଶୁଣି ପ୍ରୀତି କାନ୍ଦି କାନ୍ଦି ହୋଇ କହିଲେ, "ମୋର ନିଜର ବାପା, ମା' ଭାଇ, ଭଉଣୀ କେହି ନାହାନ୍ତି । ଏ ଦୁଃସମୟରେ ତୁମେ ମୋର ନିଜ ଲୋକପରି ଆସି ସାନ୍ତ୍ୱନା ଦେଇଛ । ତେଣୁ ତୁମେ ସବୁଦିନ ପାଇଁ ମୋର ଘନିଷ୍ଠ ଭାଇ ହୁଅ । ସୁମନ୍ତ, କହିଲ, କଣ କରିଗଲେ ସେ ମୋତେ ଏପରି ନିରାଶ୍ରିତା କରି ଚାଲିଯିବା ତାଙ୍କ କ'ଣ ନ୍ୟାୟ ହେଲେ ? ସତ୍ୟ ନ୍ୟାୟ ଧର୍ମକୁ ଜଗି ସାରା ଜୀବନ ଦୁଃଖ ପାଇଲେ । ଶେଷ ମୁହୂର୍ତ୍ତରେ ଏତେ ବଡ଼ ଭୁଲଟାଏ କରିଲେ । ଯେଉଁଥିରେ କି ଆତ୍ମା ଶାନ୍ତି ଲଭି ପାରିବନି । ହେ ଭଗବାନ, ତୁମେ ତାଙ୍କୁ ଏମିତି ବୁଦ୍ଧି ଦେଲ କାହିଁକି ?"

"ବ୍ୟସ୍ତ ହୁଅନ୍ତୁନି ନାନୀ ଯେ ଯାଏ, ସେ ଆଉ ଫେରେନି । ଭଗବାନ କ୍ଷମାର ଭଣ୍ଡାର, ସେ ନିଶ୍ଚୟ ସନାତନ ଭାଇଙ୍କୁ କ୍ଷମା କରିବେ । ଆପଣ ଯଦି ଏପରି ବ୍ୟସ୍ତ ହେବେ, ତେବେ ପିଲାମାନେ କିପରି ଧୈର୍ଯ୍ୟ ଧରିବେ ?"

Digitized by srujanika@gmail.com

"ସୁମନ୍ତ ତୋର ନାମ ଡାକ ହିଁ ମୋତେ ନିଜର କରି ନେଉଛି । ନାମକୁ ଆପଣ କହିବା ଶୋଭା ପାଏନି, 'ତୁମେ' କହିବା ହିଁ ସତେଅଛି । ଆଜି ତତେ ନିଜ ସାନଭାଇ ମନେ କରିବାରୁ ତୁମେ ନକରି କଲି 'ତୁ' ଦୁଃଖ ସମୟରେ ଭଗବାନ ତତେ ଆମ ପାଖକୁ ପଠାଇଛନ୍ତି । ପ୍ରକୃତରେ ତୁ ମୋର ଭାଇ ।

"ନାମ, ସନାତନ ଭାଇ କଣ ଅଗରୁ ବିଶେଷ ଚିନ୍ତିତ ଥିଲେ ? ସେ ଏହି ତିନି ବର୍ଷ ଭିତରେ କେତେଥର ଯେ ସାହେବ ଅଫିସକୁ ଦୌଡ଼ିଲେ, କେତେ କାକୁତି ମିନତି ହୋଇ ସାହେବଙ୍କ ପାଖକୁ ଚିଠି ଲେଖିଲେ । କିନ୍ତୁ ସାହେବଙ୍କ ବଜ୍ର କଠିନ ହୃଦୟ ତରଳିଲା ନାହିଁ । ଶେଷରେ ତୋର ସନାତନ ଭାଇ ଆଜିକୁ ଠିକ୍ ମାସେ ହେବ ଚିନ୍ତା କରି ବଞ୍ଚିବାଠାରୁ ଛୁଟି ପାଉନଥିଲେ । ମୁଁ ତାଙ୍କୁ ଯେତେ ବୁଝାଇଲି ମୁଁ ଶିକ୍ଷୟିତ୍ରୀ ଚାକିରି କରିବି ବୋଲି, କିନ୍ତୁ ସେ ମୋ ଚାକିରି କରିବାକୁ ମୋଟେ ପସନ୍ଦ କଲେନି । ତାଙ୍କର ଇଚ୍ଛା ବିରୁଦ୍ଧରେ ଚାକିରି କରିବାକୁ ମୋର ଇଚ୍ଛା ହେଲାନି ।

"ନାମ, ତୁମ କଥା ଶୁଣି ମୋ ମନ ଏ ଉଚ୍ଚପଦସ୍ଥ କର୍ମଚାରୀଙ୍କ ପ୍ରତି ବିଦ୍ରୋହ କରି ଉଠୁଛି । ମଣିଷର ମଣିଷ ପ୍ରତି କି ଅତ୍ୟାଚାର ! ଏଇମାନେ ପୁଣି ଆମ ଦେଶର ପୃଷ୍ଠ-ପୋଷକ, ଧନୀ, ମାନୀ ? କାହା ଲାଗି ଏମାନେ ଏତେ ଅନ୍ଧ ? ଅଳସ, ବିଳାସର ବୋଝ ନେଇ ଏମାନେ ବ୍ୟସ୍ତ । ଏମାନଙ୍କ ଠାରୁ ସତ୍ୟ, ନ୍ୟାୟ, ଧର୍ମ ବହୁତ ଦୂରରେ । ସବୁଦିନ

Digitized by srujanika@gmail.com

ଙ୍କର ଘର ଅନ୍ଧାର ନଥାଏ ନାନୀ, ଯେତେବେଳେ ସତ୍ୟ, ନ୍ୟାୟ ଈଶ୍ବରର ସମୟ ଆସିବ, ସେତେବେଳେ ଏମାନେ ଅନୁତାପ କରିବେ ।”

“ସୁମନ୍ତ,ଯଦି ସତ୍ୟ ନ୍ୟାୟ ଏ ଦୁନିଆଁରେ ଥାଆନ୍ତା ତେବେ କ'ଣ ଆମ ପରିବାରରେ ଏପରି ଝଡ଼ ଉଠିଥାଆନ୍ତା । ଦୁନିଆକୁ ତୁ ଚିହ୍ନିନୁ ସୁମନ୍ତ, ଏ ସମସ୍ତେ ସମାନ । ଯଦି କେହି ଅନ୍ୟାୟ ବିରୁଦ୍ଧରେ ଯିବ ତେବେ ତାକୁ ଜୀବନ ସାରା ଦୁଃଖ ଭୋଗିବାକୁ ପଡ଼ିବ । ତାର ଜ୍ୱଳନ୍ତ ପ୍ରମାଣ ଆମରି ଏ ଦୁଃଖୀ ପରିବାର । ପିଲାମାନଙ୍କ ମୁହଁରେ ଆହାର ଦେବା ପାଇଁ ମୁଁ ଚାକିରି କରିବି କି ଟ୍ୟୁସନ କରିବି । କିନ୍ତୁ ମୁଁ ବାହାରକୁ ଗଲେ ଘରେ ପିଲାମାନଙ୍କୁ କିଏ ଦେଖିବ ? କ'ଣ କରିବି ମୁଁ କିଛି ଭାବି ପାରୁନି ।”

“ନାନୀ ମୁଁ ତୁମକୁ ଚାକିରି କରିବାକୁ ଛାଡ଼ିଦେବିନି । ମୋର ତ ଦୁନିଆରେ କେହି ନାହାନ୍ତି । ପିଲାମାନଙ୍କୁ ମଣିଷ କରିବା ଭାର ମୋ ଉପରେ ଦିଅ । ଯାହା ମୁଁ ରୋଜଗାର କରିବି, ସେଥିରେ ପିଲାମାନେ ଦୁଧ ଭାତ ଖାଇ ନପାରନ୍ତି, ଭାତ, ଡାଲି ତ ଖାଇ ପାରିବେ । ଜାଣି ଶୁଣି ଅମଣିଷ ଗୁଡ଼ାଙ୍କ ପାଖରେ ତୁମକୁ ଚାକିରି କରିବାକୁ ଛାଡ଼ିବିନି । ପିଲାମାନେ ଯଦି ଉପବାସରେ ରହିବେ, ତେବେ ତୁମେ ଚାକିରି କରିବ ।”

ଏ କଥା ଶୁଣି ନାନୀଙ୍କ ଆଖିରୁ ଝରିପଡ଼ି ପଡ଼ିଲା ମମତା ଭରା ଅଶ୍ରୁ । କହିଲେ, “ସୁମନ୍ତ, ତୋ କଥା ଗୁଡ଼ାକ ଏତେ ଦରଦ ଭରା ଯେ ତୋ କଥା ମୁଁ ଏଡ଼ାଇ ଦେଇ ପାରୁନି । ହଉ ଯାହା ହେବାର ଥିବ ତାହା ହେବ ।”

Digitized by srujanika@gmail.com

ସେତେବେଳକୁ ରାତି ଅନେକ ହୋଇ ଗଲଣି । ବାହାରେ ସେହିପରି ଅନ୍ଧାର ଘେରି ରହିଛି । ରାତିର ନୀରବତା ଭେଦି ବାହାର ଆମ୍ବ ଗଛରେ ପେଚା ରାବ ଉଠୁଛି । କୁକୁର ଗୁଡ଼ାକ ଭୋ ଭୋ ରଡ଼ି କରୁଛନ୍ତି । ଏଇ ନିର୍ଜନ ରାତି, ସମସ୍ତେ ନିଦ୍ରା-ଦେବୀଙ୍କ କୋଳରେ ଆଶ୍ରୟ ନେଇଛନ୍ତି । କେବଳ ଜାଗି ରହିଛନ୍ତି ସୁମନ୍ତ ଓ ତାଙ୍କର ନାନୀ ସ୍ନିଗ୍ଧା ଦେବୀ, ସନାତନ ବାବୁଙ୍କ ସ୍ତ୍ରୀ । ଦୁଃଖରେ ଭାଙ୍ଗି ପଡ଼ୁଛନ୍ତି ସ୍ନିଗ୍ଧା ଦେବୀ, ସାନ୍ତ୍ୱନା ଦେଉଛନ୍ତି ସୁମନ୍ତ । × × ×

... ... ... ... ...

ସନାତନ ବାବୁଙ୍କ ଘର । ଘରଟି ଦରଭଙ୍ଗା ହେଲେ କଣହେବ, ପରିଷ୍କାର ପରିଛନ୍ନ । ଘରର ଗୋଟିଏ କଣରେ ଛୋଟ ଟେବୁଲ । ଟେବୁଲଟି ଉପରେ ଧଳା ଲୁଗା ଖଣ୍ଡିଏ ପଡ଼ି ବହିପତ୍ରଗୁଡ଼ିଏ ସଜଡ଼ା ହୋଇ ଥୁଆ ହୋଇଛି । ତା ପାଖରେ ଗୋଟିଏ ଟିଣ ଥାକଅଛି । ସେଥିରେ ସଫା ଖବର କାଗଜ ପଡ଼ି ବହି ଖାତା ଯତ୍ନ ସହକାରେ ରଖାଯାଇଛି । ଘରଟି ଛୋଟ । କିନ୍ତୁ ଜିନିଷ ପତ୍ର ଗୁଡ଼ିକ ଯଥା ସ୍ଥାନରେ ରହିଥିବାରୁ ଘରଟି ଶ୍ରୀଯୁକ୍ତ ଦିଶୁଛି । ଘର ଭିତରେ ଜିନିଷ ପତ୍ର ଗୁଡ଼ାଏ ନାହିଁ । ବାସ୍ତବିକ ପରିଷ୍କାର ପରିଛନ୍ନତାରେ ହିଁ ଘରର ସୌନ୍ଦର୍ଯ୍ୟ ଫୁଟି ଉଠେ । ଦାମି ଆସବାବପତ୍ରରେ ନୁହେଁ । ଏ ଘରଟିରେ ଅଛି ନମ୍ରତାର ପ୍ରତିଛବି । ନାହିଁ ବଡ଼ଲୋକି ଆଦବ କାଇଦା ।

ସେହି ଘରର ଭିତର ପଟ ବାରଣ୍ଡାରେ ବସି ପିଲାଗୁଡ଼ିଏ ମୁଢ଼ି ଖାଉଛନ୍ତି । ତାଙ୍କୁ ଆଉଜି ବସିଛନ୍ତି ସୁମନ୍ତ ମିଶ୍ର । ହାତରେ ତାଙ୍କର ସେ ଦିନର ଖବର କାଗଜ ।

Digitized by srujanika@gmail.com

ଅଗଣାରେ ବକ୍ରୁଡ଼ ହୋଇ ପଡ଼ିଛି ନରମ ସୁନେଲି ଖବର ।
ସ୍ନିଗ୍ଧା ଦେବୀ କପଟିରେ କାଗଜ ଲେମ୍ବୁ ମିଶା ଚା' ଆଣି
ବଢ଼ାଇ ଦେଲେ ସୁମନ୍ତଙ୍କ ହାତକୁ ।

ସୁମନ୍ତ ଚା' କପ୍‌ଟି ହାତରେ ଧରି କହିଲେ, "ସନାତନ
ଭାଇଙ୍କର ଗୋଟାଏ ଚିଠି ଆଜି ଖବର କାଗଜରେ ବାହାରିଛି ।
ସେ ଚିଠି ପଢ଼ିଲେ ଯେ କୌଣସି ଲୋକର ରକ୍ତ ତାତି ଉଠିବ ।
ଏ ଦୁନିଆରେ ପୁଣି ଏପରି ସର୍ବନାଶୀ ଉଚ୍ଚପଦସ୍ଥ କର୍ମଚାରୀ
ଅଛନ୍ତି । ଛିଃ, ଛିଃ କି ଘୃଣ୍ୟ ସେମାନେ ?"

ସ୍ନିଗ୍ଧା ଦେବୀ ଚଞ୍ଚଳ ହୋଇଯାଇ କହିଲେ, "କ'ଣ
ଏମିତି ବକି ଯାଉଛ । ଚିଠି କ'ଣ ଲେଖା ହୋଇଛି ପଢ଼ିଲ
ମୁଁ ଶୁଣେ । ତୁ ଏମିତି ପାଗଳ ପରି ହାତ ଟେକିକରି ବସିଛ
କାହିଁକି ?"

"ହଁ ନା, ଖାଲି ବସିନ । ଭାବୁଛି, ସନାତନ ଭାଇ
ଏମାନଙ୍କୁ ଉଚିତ ଶିକ୍ଷା ନଦେଇ ଚାଲିଗଲେ କାହିଁକି ? ଅନ୍ୟାୟ,
ଅତ୍ୟାଚାରର ବିଚାର କିଏ ଏ ସମାଜରେ ଆମର ନାହିଁ ?"

"ତୁ ପଛେ ସେ ସବୁ କହିବୁ ? ଆଗ ପଢ଼ କଣ ଚିଠି
ଲେଖା ହୋଇଛି । ମୁଁ ପରା ଶୁଣିବି ବୋଲି କହୁଛି ?"

"ହଉ ଶୁଣ ମୁଁ ପଢ଼ୁଛି ।"

ସମ୍ପାଦକ ମହାଶୟ,

ନମସ୍କାର, ଆପଣଙ୍କ ପାଖକୁ ପତ୍ର ଲେଖିବା ମୋ
ଜୀବନରେ ଏହା ପ୍ରଥମ ଓ ଶେଷ । କପରି ଚିଠି ଲେଖିବାକୁ

Digitized by srujanika@gmail.com

ହୁଏ ଜାଣିନ । ଅପଣଙ୍କ ପାଖକୁ ଯାହା ଲେଖୁଛି, ସେ ସମସ୍ତ ନିରାଟ ସତ କଥା । ଯାହା କି ମୁଁ ନିଜ ଅଙ୍ଗରେ ଲିଭାଇଛି । ଅପଣଙ୍କୁ ମୋର ଅନୁରୋଧ, ଅପଣଙ୍କ ନିକଟକୁ ଲେଖିଥିବା ଏହି ପତ୍ରଟିକୁ ଆପଣଙ୍କ ଖବର କାଗଜରେ ପ୍ରକାଶ କରିବେ । ଜନ-ସାଧାରଣଙ୍କ ଦୃଷ୍ଟି ଗୋଚର ହେଉ, ନିଷ୍ପାପ ଜନତା ଆଜି କିପରି ଲାଞ୍ଛିତ ଓ ଅତ୍ୟାଚାରିତ । ଆପଣ ଯଦି ଏ ପତ୍ରଟିକୁ ପ୍ରକାଶ ନକରନ୍ତି, ତେବେ ପ୍ରତିବାଦ କରିବାକୁ ମୁଁ ନଥିବି । ଚାଲି ଯାଇଥିବି ବହୁତ ଦୂରକୁ— ଯେଉଁଠାରୁ କି ମନୁଷ୍ୟ କେବେ ଫେରେନି । ସେହି ଶେଷ ବିଦାୟ ନିବା ପୂର୍ବରୁ ଆପଣଙ୍କୁ ମୁଁ ମୋର ଜୀବନର ଦୁଃଖ କହି ଯାଉଛି, ଅନ୍ତତଃ ଜମାଟ ବାନ୍ଧିଥିବା ଦୁଃଖ ଗୁଡ଼ାକ ଆପଣଙ୍କୁ କହିଦେଲେ ମନଟା ଟିକିଏ ହାଲୁକା ଲାଗିବ । ସତ୍ୟ, ନ୍ୟାୟ, ଧର୍ମର ଆଦର୍ଶକୁ ନେଇ ରହିବାକୁ ମୋ ପ୍ରତି ଉଚ୍ଚକର୍ତ୍ତୃପକ୍ଷ କିପରି ଅବିଚାର କରିଛନ୍ତି, ତାର ବିଚାର କରନ୍ତୁ ଆମର ଅବହେଳିତ ଜନ-ସାଧାରଣ । ଶୁଣନ୍ତୁ ମୋ ଜୀବନର ଇତିହାସ ।

୧୯୫୪ ମସିହା ଜୁନ୍ ମାସ ୧୪ ତାରିଖ । ପ୍ରଥମ କରି ମୁଁ ଚାକିରି କଲି । ମନରେ ମୋର ଅସୀମ ଆନନ୍ଦ । ସରକାରୀ ଚାକିରି । ଓଭରସିଅର । କିନ୍ତୁ ସେ ଖୁସି ମୋର ସବୁଦିନ ପାଇଁ ରହିଲା ନାହିଁ । ଅଳ୍ପ କେତେଟା ବର୍ଷ ପରେ ସେ ଖୁସି ମୋର ଲିଭିଗଲା । ଶେଷରେ ରହିଲା ମୋ ଆଖିରୁ ଟୋପା ଟୋପା ଲହୁ-ମିଶା ଲୁହ । ମନେ ପଡ଼ୁଛି ସେହି ଅତୀତର କଥା ଗୁଡ଼ାକ । ନୂଆ ଚାକିରି ୧୯୫୪ ମସିହା ଅକ୍ଟୋବର ମାସ । ଫୁଲବାଣୀ

Digitized by srujanika@gmail.com

ରାସ୍ତା ତିଆରି ବାମ ବୃର୍ଜରେ ମୁଁ ଥାଏ କଣ୍ଟ୍ରାକ୍ଟର ଠିକା ନେଇଥାଏ । କଣ୍ଟ୍ରାକ୍ଟର ରାସ୍ତା ତିଆରି ପରେ ବିଲ୍ ଦେଲା । ସେ ବିଲ୍ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ରାସ୍ତା ମାପ ଚେକ୍ କରି ଜାଣିଲି ଯେ ଠକେଇ ଭାବରେ ରାସ୍ତା ତିଆରି କରାଯାଇଛି । ସେ ରାସ୍ତାଟିରେ ଟ ୧୮୦୦ ଟଙ୍କା ଖର୍ଚ୍ଚ ହୋଇଥିବ । କିନ୍ତୁ କଣ୍ଟ୍ରାକ୍ଟର ମହାଶୟ ବିଲ୍ ଦେଇଛନ୍ତି ଟ ୧୮୦୦୦୯ ସ୍ୱା ଠାରୁ ବଳି ଆଶ୍ଚର୍ଯ୍ୟର କଥା ଆଉ କଣ ଥାଇପାରେ ? ଏମିତି କଣ ବିଲ୍ ଦେଇଛନ୍ତି ମୁଁ ପାଶ୍ କରି ପାରିବିନି କହି କଣ୍ଟ୍ରାକ୍ଟରକୁ ବିଲ୍ ଫେରାଇ ଦେଲି । ମୁଁ ବିଲ୍ ଫେରାଇ ନବାକୁ କହିଲାରୁ କଣ୍ଟ୍ରାକ୍ଟର କହିଲେ - ଆପଣ ବିଲ୍ ପାଶ୍ କରି ଦିଅନ୍ତୁ । ମୁଁ ସମସ୍ତ ଠିକ୍ କରିଦେବି । ଅପଣ ଏତେ ବ୍ୟସ୍ତ ହଉଛନ୍ତି କାହିଁକି । ସମସ୍ତେତ ଏପରି ବିଲ୍ ପାଶ୍ କରି ଦିଅନ୍ତି । ଆପଣ ନୂଆ ଆସିଛନ୍ତି ବୋଲି ଏପରି କହୁଛନ୍ତି । ପରେ ସବୁ ବୁଝିବେ ଯେ ।

ଏ ସମସ୍ତ ଘଟଣା ମୁଁ ଆମ ସାହେବଙ୍କୁ ଜଣାଇଲି । ସାହେବ କହିଲେ - ତୁମେ ସବୁ ବିଷୟ ଲେଖିକରି ଦିଅ ଏବଂ ବିଲ୍ ପାଶ କରନି । କଣ୍ଟ୍ରାକ୍ଟରରୁ ତାକୁ ଏଥର କାଟି ଦବା ।

ଏହା ପରେ କିଛି ଦିନ ବିତି ଯାଇଛି । ସନ୍ଧ୍ୟା ସମୟ । ମୁଁ ଘରେ ବସି ସରକାରୀ କାଗଜପତ୍ର ଦେଖୁଥାଏ ସେତିକି-ବେଳେ ଆମଘରେ ଅସି ପହଞ୍ଚିଲେ ସେହି କଣ୍ଟ୍ରାକ୍ଟର । ଯାହାଙ୍କ ବିଲ୍ ମୁଁ ପାଶ୍ କରି ନଥିଲି । ସେ କଣ୍ଟ୍ରାକ୍ଟର କିଏ ସେ ଜାଣନ୍ତି ? ଆମ କଟକ ସହରର ୧ ନମ୍ବର କଣ୍ଟ୍ରାକ୍ଟର ପୂର୍ଣ୍ଣେନ୍ଦୁ

Digitized by srujanika@gmail.com

ବିଶ୍ବାଳ । ସୁପ୍ରସିଦ୍ଧ ଧନୀ, ସମସ୍ତେ ପ୍ରାୟ ତାଙ୍କୁ ଚିହ୍ନନ୍ତି । ସେହି ପୂର୍ଣ୍ଣେନ୍ଦୁ ବିଶ୍ବାଳ ସେ ଦିନ ଆମ ଘରକୁ ଆସିଥିଲେ । ହାତରେ ତାଙ୍କର ଏକ ଦାମୀ ରେଡ଼ିଓ । ରେଡିଓଟି ମୋ ଟେବୁଲ ଉପରେ ରଖି କହିଲେ - ଆପଣଙ୍କର ରେଡ଼ିଓ ଗୋଟିଏ ନିହାତି ଦରକାର ବୋଲି କିଛିଦିନ ତଳେ ମତେ ଇଞ୍ଜିନିୟର ସାହେବ କହୁଥିଲେ । ଭଲ ରେଡ଼ିଓଟିଏ ନଜରରେ ପଡ଼ିବାରୁ ଆପଣଙ୍କ ପାଇଁ ନେଇ ଆସିଛି । ଆପଣ ରଖନ୍ତୁ ।

"ଆପଣ ସିନା ରେଡିଓଟା ଆଣିଦେଲେ, କିନ୍ତୁ ମୋ ପାଖରେ ତ ବର୍ତ୍ତମାନ ଟଙ୍କା ନାହିଁ । ଆପଣ ରେଡ଼ିଓଟା ଆଉ କାହାକୁ ଦେଇ ଦିଅନ୍ତୁ । ମୁଁ ପରେ ଟଙ୍କା ପଇସା ପାଖରେ ଥିଲି ବେଳେ ସୁବିଧା କରି କିଣିବି । ବର୍ତ୍ତମାନ ରେଡ଼ିଓଟା କିଣିବା ମୋ ପକ୍ଷରେ ସମ୍ଭବ ନୁହେଁ ।"

"ଆପଣ ପରେ ଟଙ୍କା ଦେବେ । ଆପଣଙ୍କ ଉପରେ କଣ ମୋ ଟଙ୍କା ବୁଡ଼ିଯିବ ? ଆପଣ ଏପରି ବ୍ୟସ୍ତ କାହିଁକି ହେଉଛନ୍ତି । ମୁଁ ଖୁସି ମନରେ ଆପଣଙ୍କ ପାଇଁ ଏ ରେଡ଼ିଓ ଟା ଆଣିଛି, ଆପଣ ଫେରାଇ ଦେଲେ ମୋ ମନ କଷ୍ଟ ହେବ । ଧରୁ ବଡ଼ ସାହେବମାନେ ତ ମୋ ଠାରୁ ଏପରି ବଡ଼ ବଡ଼ ଜିନିଷମାନ ରଖି ପରେ ଟଙ୍କା ଦିଅନ୍ତି । ଆପଣ ରଖନ୍ତୁ ମୁଁ ଯାଉଛି । ମୋର ଅନେକ କାମ ଅଛି । ହଉ ନମସ୍କାର । ... ... ...

ପୂର୍ଣ୍ଣେନ୍ଦୁ ବାବୁ ରେଡ଼ିଓଟି ଦେଇ ଚାଲିଗଲେ । ମୋ ସ୍ତ୍ରୀ ଓ ପିଲାମାନେ ରେଡିଓଟି ବଜାଇ ବହୁତ ଆନନ୍ଦ ପାଇଲେ । କିନ୍ତୁ ମୋର ଚିନ୍ତାଥାଏ କିପରି ଟଙ୍କା କେଉଁଠୁ ଆଣି ରେଡ଼ିଓ ଦାମ୍ ଟା ଦେଇ ଦେଲେ ରକ୍ଷା ପାଇବି ।

Digitized by srujanika@gmail.com

ଠିକ୍ ସ୍ୱାର ସ୍ୱଶଦନ ପରବ ଘଟଣା । ମୋତେ ଆମ ସାହେବ ଡାକ କହିଲେ, "ପୃଥ୍ବେନ୍ଦ୍ର ବଶ୍ୱାଳଙ୍କର ସେ ୪୧୮୦୦୦୦ର ବଲ୍ଟା ପାଶ୍ କର ଦଅ ।" "ମୁଁ କନ୍ତୁ ସାହେବଙ୍କ କଥାରେ ରାଜ ହୋଇ ପାରିଲନ । ଏତେ ବଡ଼ ଅନ୍ୟାୟ ମୁଁ କର ପାରବନ । ମୁଁ କର ପାରବନ ବୋଲ କହିଲାରୁ ସହେବ ମୋ ଉପରେ ବରକ୍ତ ହେଲେ । ସାହେବଙ୍କ କଥାରୁ ମୁଁ ଜାଣିଲ ଯେ ମୁଁ ଯଦ ପୃଥ୍ବେନ୍ଦ୍ର ବାବୁଙ୍କ ବଲ ପାଶ୍ ନ କରବ, ତେବେ ମୁଁ ଏଠାରେ ରହି ପାରବନ ।

ତଥାପି ମୁଁ ଡ଼ର ନଯାଇ ମୋ ପ୍ରତିଜ୍ଞାରେ ଅଟଳ ରହିଲ । ମୁଁ ସେହିଦନ ଟଙ୍କା ଜଣକଠାରୁ ଧାର କର ନେଇ ପୃଥ୍ବେନ୍ଦ୍ର ବାବୁଙ୍କୁ ରେଲ୍ୱେ ଦାମ୍ ଦେଇ ଆସିଲ ।

ଚାର ମାସକ ପରେ ମୋର ବଦଳ ଅର୍ଡ଼ର ଅସିଲା । ବଦଳ ହୋଇଛୁ ପଦ୍ମପୁରକୁ । ସରକାରୀ ଚାକର ବଦଳ ହେଲେ ହେଲା । ସେଥିରେ କଣ ଅଛୁ । କନ୍ତୁ ସମ୍ପାଦକ, ମହାଶୟ, ସେହିଦନ ଠାରୁ ମୋ ଜୀବନରେ ଘୋଟି ଆସିଲା । ଅମାବାସ୍ୟାର ଅନ୍ଧକାର । ପଦ୍ମପୁରରେ ରହିବା ମୋର ଦୁଇମାସ ହୋଇନ, ସେଠାରୁ ବଦଳ ହୋଇ ଅସିଲ ଭବାନୀ ପାଟଣା । ଭବାନୀ-ପାଟଣାରେ ଦେଡ଼ମାସ ରହିବା ପରେ ପୁଣି ବଦଳ ହେଲା ରେଢାଖୋଲକୁ । ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଥରକୁ ଥର ବଦଳ ହୋଇ ମୁଁ ଯାହା ହଇରାଣ ହୋଇଛୁ, ସେ କଥା ବର୍ତ୍ତମାନ ମନେ ପଡ଼ିଲେ ମନରୁ କୋହ ଉଠେ । ଭବାନୀ-ପାଟଣାରୁ ରେଢାଖୋଲ ବଦଳ ହୋଇ ଗଲା ବେଳେ ମୋର ଦୁଇଟି ଶିଶୁ ମୃତ୍ୟୁ ବରଣ କରିନେଲେ । ଗୋଟିଏ ଦେଢ଼ ବର୍ଷର

Digitized by srujanika@gmail.com

ଏଇ ଗୋଟିଏ ଗୃହିଣି ମାସର । ସେ ହୃଦୟ ବିଦାରକ ଦୃଶ୍ୟ ଯେ ଦେଖିବ, ଧୈର୍ଯ୍ୟ ଧରି ପାରିବନି । କିନ୍ତୁ ଆମ ବଡ଼ ସାହେବଙ୍କ ହୃଦୟ ଟଳିଲାନି । ମନୁଷ୍ୟର ଧନମୋହ କପରି ପଶୁତ୍ୱ ଅବଲମ୍ବନ କରେ, ତାର ଜ୍ୱଳନ୍ତ ପ୍ରମାଣ ଆମର ପୂର୍ଣ୍ଣେନ୍ଦୁ ବାବୁ ଓ ବଡ଼ ସାହେବ । ମୋ ପରି ଯେ କେତେ ସରଳ ଲୋକ ବଡ଼ ସାହେବଙ୍କ ନାଲି ଆଖି ତଳେ ଆଖିରୁ ଲହୁ ଲୁହ ଝରାଉଛନ୍ତି, ତାର ହିସାବ ରଖୁଛି କିଏ ?

ଏଥର ଶୁଣନ୍ତୁ, ରେଢ଼ାଖୋଲରେ ରହିବାର ପାଞ୍ଚମାସ ପରର ଘଟଣା । ପିଲାଙ୍କ ମୃତ୍ୟୁରେ ମୋ ଦେହ, ମନ ଭାଙ୍ଗି ପଡ଼ିଥାଏ । ସ୍ତ୍ରୀ, ମୋର ବିଛଣାରୁ ଉଠି ପାରୁ ନଥା'ନ୍ତି । ମାନସିକ ଦୁଃଶ୍ଚିନ୍ତା ଯୋଗୁ ତାଙ୍କ ଅବସ୍ଥା ଦିନକୁ ଦିନ ଖରାପ ଅଡ଼କୁ ଗତି କରୁଥାଏ । ଉପଯୁକ୍ତ ଚିକିତ୍ସା ଓ ସେବା ଶୁଶ୍ରୂଷା ପାଇଁ ମଧ୍ୟ ମୋ ପାଖରେ ପଇସାପତ୍ର ନଥାଏ । ବଡ଼ ଦୁଃଖରେ ମୋ ଦିନ ଗୁଡାକ କଟୁଥାଏ । ସେହି ସମୟର ଦିନକର ଘଟଣା ।

ଆମ ବିଭାଗର ସବୁଠାରୁ ବଡ଼ ସାହେବ ରେଢ଼ାଖୋଲ ଗସ୍ତରେ ଆସିଥାନ୍ତି । ମୋତେ ମୋ ଉପର ସାହେବ କହିଲେ ବଡ଼ ସାହେବ ଓ ତାଙ୍କ ସହିତ ଆଉ ଦଶ ବାର ଜଣ ଭଦ୍ରବ୍ୟକ୍ତି ଅସିଛନ୍ତି. ତୁମେ ସେମାନଙ୍କ ପାଇଁ ଉତ୍କୃଷ୍ଟ ଖାଦ୍ୟ-ପେୟର ବ୍ୟବସ୍ଥା କର ।

ମୁଁ ମୋ ଉପର ସାହେବଙ୍କୁ ଟଙ୍କା ମାଗିଲି । ସାହେବ ମତେ କହିଲେ କଣ୍ଟ୍ରାକ୍ଟର ଟଙ୍କା ଦେବ । ତୁମେ ଟଙ୍କା ନେଇ ଆଗ ସମସ୍ତ ବ୍ୟବସ୍ଥା କର, ପରେ ବିଲ୍ ହେବ ।

Digitized by srujanika@gmail.com

ବଡ଼ ସାହେବଙ୍କ ପାଇଁ ଡାକ ବଙ୍ଗଳାଟି ଦୁଇଦିନ ପାଇଁ ମୁଖରିତ ହୋଇ ଉଠିଲା। ଖାଇବାର ଧୂମ ଉଡ଼ିଲା । ଭଲ ଖାଇବା ହେବାରୁ ବଡ଼ ସାହେବଙ୍କ ଠାରୁ ଶ୍ରେଷ୍ଠ ସାହେବଙ୍କ ପର୍ଯ୍ୟନ୍ତ ସମସ୍ତେ ମୋର ପ୍ରଶଂସା କଲେ । ବଡ଼ ସାହେବ ଫେରିଯିବାକୁ ବାହାରିଲେ । ମୁଁ ମୋ ଉପର ସାହେବଙ୍କୁ ଖାଇବା ପିଇବା ପାଇଁ ଖର୍ଚ୍ଚ ହୋଇଥିବା ବିଲ୍ ଟି ଆଣି ଦେଲି ।

ସାହେବ ବିରକ୍ତ ହୋଇ କହିଲେ – ଏ ବିଲକୁ ଅନ୍ୟ କେଉଁ ବିଲ୍ ରେ ଭର୍ତ୍ତି କରି ଦବ ନା ମତେ ଆଣି ଦଉଚ । କ'ଣ ମୁଁ ମୋହାତରୁ ଟଙ୍କା ଦେବକି ? କ'ଣ ନୂଆ ହୋଇ ଓଭରସିଅର ହୋଇଚ କି ? ବଡ଼ ସାହେବଙ୍କ ପାଇଁ ତ ଖର୍ଚ୍ଚ ହେଲା, ସେ ବିଲ୍ ନେଇ ବଡ଼ ସାହେବଙ୍କୁ ଦେଇ ଦଉନ ?

ଆପଣ ଯଦି କହିବେ, ତେବେ ବଡ଼ ସାହେବଙ୍କୁ ଏ ବିଲ କଣ ନେଇ ଦେଇ ଆସିବି । ଦବା ପାଇଁ କଣ ମତେ ଲାଜ ମାଡ଼ୁଛି ?

ହଁ ଯାଅ ଦେଇ ଦେବ । ତୁମ ପରି ଓଭରସିଅର୍ ମୁଁ ଆଜିପର୍ଯ୍ୟନ୍ତ ଦେଖିନି । ଏତେ ଏକଜିଦିଆ ନବୋଧ ତୁମେ ?

ବଡ଼ ସାହେବ ଯିବାକୁ ବାହାରି ଥାନ୍ତି । ତାଙ୍କ ପାଖରେ ଅନ୍ୟମାନେ ମଧ୍ୟ ଥାଆନ୍ତି । ମୁଁ ଯାଇ ବିଲ୍ ଟି ବଡ଼ ସାହେବଙ୍କ ହାତକୁ ବଢ଼ାଇ ଦେଲି । ବଡ଼ ସାହେବ ବିଲ୍ କୁ ରଖି ଟିକଏ ଚଡ଼ା ଗଳାରେ କହିଲେ – ହଉ ଯାଅ, ମୁଁ ବିଲ୍ ଟଙ୍କା ପରେ ପଠାଇ ଦେବି । ବଡ଼ ସାହେବ ବିଦାୟ ନେଇ ଚାଲିଗଲେ ।

Digitized by srujanika@gmail.com

ସ୍ତା ଭିତରେ କଟିଗଲା । ହଠାତ୍ ଦିନେ ସନ୍ଧ୍ୟା-ବେଳେ ମୋ ଘରେ କେତେଜଣ ପୋଲିସ ପଶି ମୋ ରେଡ଼ିଓକୁ ଜବତ କଲେ । ଆଶ୍ଚର୍ଯ୍ୟ ହେଲି ମୁଁ । ମୋ ଘରେ ପୋଲିସ ପଶି ରେଡ଼ିଓ ଜବତ କରି ନେଇ ଯାଉଛନ୍ତି । ମୁଁ ରେଡ଼ିଓଟି ପୂର୍ଣ୍ଣେନ୍ଦୁ ବିଶ୍ୱାଳଙ୍କ ଠାରୁ କିଣିଛି ବୋଲି ଯେତେ କହିଲେ ବି କେହି ଶୁଣିଲେ ନାହିଁ । ଓଲଟି କହିଲେ ଆପଣ ଯଦି ରେଡ଼ିଓଟା କିଣିଛନ୍ତି ବୋଲି କୌଣସି ପ୍ରମାଣ ରଖିଛନ୍ତି, ତେବେ କୋର୍ଟରେ ପ୍ରମାଣ ଦେଖାଇ ରେଡିଓଟା ନେଇ ଆସିବେ ।

ପୋଲିସ ରେଡ଼ିଓ ନେଇ ଚାଲିଗଲେ । ମୋ ଆଖି ଆଗରେ ନାଚିଲା ସେହି ପୂର୍ଣ୍ଣେନ୍ଦୁ ବିଶ୍ୱାଳଙ୍କର ପ୍ରତିମୂର୍ତ୍ତି । ତାଙ୍କ ବିଲ୍ ପାଶ୍ ନକଲି ବୋଲି ଯେତେକ ଷଡଯନ୍ତ୍ର ସବୁ ମୋର ବିରୁଦ୍ଧରେ ଚାଲିଛି । ଭଗବାନ କ'ଣ ଏତେ ନିର୍ଦ୍ଦୟ । ସବୁଦିନ କଣ ଏ ଅନ୍ୟାୟ, ଅନୀତି ଚାଲିଥିବ । ଅଜ ସମସ୍ତେ ଆଖିବୁଜି ସହି ଯାଉଥିବେ । ତେବେ ସବୁ ସହି ଯିବାର ସୀମା ଅଛି । ନ୍ୟାୟ, ଧର୍ମ ଉପରେ ବିଶ୍ୱାସ ରଖି ମୁଁ ମୋ କାମ କରିବାକୁ ଲାଗିଲି ।

ପାଞ୍ଚ ଛଅ ଦିନ ପରେ ଅଫିସ ଯାଇଥାଏ । ମୋ ଉପର ସାହେବଙ୍କୁ ଯାଇ ପଚାରିଲି, "ବଡ଼ ସାହେବ ବିଲ୍ ଟଙ୍କା ପଠାଇ-ଛନ୍ତି କି ?"

"ହଁ ବଡ଼ ସାହେବ ଚିଠି ପଠାଇଛନ୍ତି ଅଫିସରେ ଅଛି ନେଇଯିବେ ।"

Digitized by srujanika@gmail.com

ମନେ ମନେ ଭାବିଲି, ବଡ଼ ସାହେବ ନିଶ୍ଚୟ ବିଲ୍ ଟଙ୍କା ପଠାଇ ଦେଇଛନ୍ତି । ଆଗ୍ରହରେ ସବ୍‌ଡିଭି ଅଫିସରୁ ଚିଠିଟି ଆଣି ଦେଖେତ ଟଙ୍କା ନୁହେଁ, ମୋତେ ସସ୍‌ପେଣ୍ଡ୍ କରାଯାଇଛି । ଦୋଷ ମୋର କଣ ! ମୋ ମୁଣ୍ଡରେ ଏ ଅଶନିକ ଚଡ଼କ କାହିଁକି ପଡ଼ିଲା ! ବଡ଼ ସାହେବଙ୍କର ମୋ ପ୍ରତି ଏ କରୁଣା କାହିଁକି ? ମୁଣ୍ଡରେ ମୋର ଉଲୁକଅ ବସ୍ତୁ ଧାମୁଡ଼ିବାକୁ ଲାଗିଲା । ସସ୍‌ପେଣ୍ଡ ଅର୍ଡ଼ର ଚିଠିଟା ନେଇ କିପରି ଯାଇ ମୁଁ ଘରେ ପହଞ୍ଚିଛି, ସେ କଥା ମୋର ମନେ ନାହିଁ । ଘରେ ଯାଇ ଲମ୍ବ ହୋଇ ଶୋଇ ପଡ଼ି ଚିଠିଟାକୁ ଆମୂଳଚୂଳ ପଢ଼ିବାକୁ ଲାଗିଲି । ଚିଠିରେ ଲେଖା ହୋଇଛି ନିରାଟ ମିଛ କଥା, ଯାହା କି ମୋ କଳ୍ପନାର ବାହାରେ । ସସ୍‌ପେଣ୍ଡ କରିବା କାରଣରେ ଦର୍ଶାଯାଇଛି ଯେ ମୁଁ କଣ୍ଟ୍ରାକ୍ଟର ପୂର୍ଣ୍ଣେନ୍ଦୁ ବିଶ୍ୱାଳଙ୍କ ଠାରୁ ରେଡ଼ିଓଟା ଲାଞ୍ଚ ଆଣିଥିଲି ଏବଂ ତାଙ୍କୁ କିଛି ଟଙ୍କା ଉତ୍କୋଚ ମାଗୁଥିଲି । ସେ ମତେ ଟଙ୍କା ନଦେବାରୁ ମୁଁ ତାଙ୍କ ବିଲ୍ ପାଶ କଲିନି । ଚିଠିଟା ପଢ଼ି ସାହେବଙ୍କ ପ୍ରତି ଘୃଣାରେ ମୋ ମନ ବିକ୍ଷୋଭ ଉଠିଲା । ଏମାନେ ସାମାନ୍ୟ ଟଙ୍କା ପାଇଁ ମୋ ନାଁରେ ଏତେ ମିଛ ଲେଖିଲେ ! ସତ୍ୟର ବିଚାର କଣ ଏଇଯୁ ?

ଚାକିରିରୁ ସସ୍‌ପେଣ୍ଡ୍ ହେବା ପରେ ମୁଁ କଟକ ଚାଲିଆସିଲି । ସରକାରଙ୍କ ପାଖକୁ କେତେ ଚିଠି ଲେଖି ମୋ ଗୁହାରି ଜଣାଇଲି ଯେ ବିନା କାରଣରେ ମୋତେ ସସ୍‌ପେଣ୍ଡ କରାଗଲା, କିନ୍ତୁ ମୋ ଗୁହାରି ଆମ ସରକାର ଶୁଣିଲେ ନାହିଁ । ଦୀର୍ଘ ତିନିବର୍ଷ ଅପେକ୍ଷା କଲି ମୋ ଗୁହାରିର ବିଚାର ସରକାର କରିବେ ବୋଲି । କିନ୍ତୁ ସରକାର ମଧ୍ୟ ମୋ ଦୁଃଖର ବିଚାର କଲେନି । ତା ପରେ

Digitized by srujanika@gmail.com

କେତେଜଣ ବନ୍ଧୁଙ୍କ ପ୍ରରୋଚନାରେ ସରକାରଙ୍କ ବିରୁଦ୍ଧରେ ହାଇକୋର୍ଟରେ ରିଟ୍ ଦାଖଲ୍ କଲି । ରିଟ୍‌ଟି ବିଚାରପତିଙ୍କ ବିଚାର ପାଇଁ ଯୋଗ୍ୟ ହେଲା । କିନ୍ତୁ ବିଚାରପତି ସିନା ବିଚାର କରିବାକୁ ରିଟ୍ ଗ୍ରହଣ କଲେ, କିନ୍ତୁ ସରକାରଙ୍କ ତରଫରୁ ତାରିଖ ପରେ ତାରିଖ ଗଡ଼ିବାକୁ ଲାଗିଲା । ଏହି ତାରିଖ ଗଡ଼ିବାରେ ପୁଣି ଅର୍ଦ୍ଧ ଦୁଇବର୍ଷ କଟିଗଲା ।

ସେହି ଦୁଇବର୍ଷ ପରେ ଦିନେ ବଡ଼ ସାହେବଙ୍କ ଠାରୁ ଗୋଟିଏ ଚିଠି ପାଇଲି ଯେ ବଡ଼ ସାହେବଙ୍କୁ ଦେଖା କରିବାକୁ ପଡ଼ିବ । ଆଦେଶ ମାନି ଦେଖା କରିବାକୁ ଗଲି । ସେ ଦିନ ସାହେବଙ୍କର ମୋ ପ୍ରତି କି ଆଦର । ଆଜି ସେ ସ୍ନେହ ଆଦର ମନେ ପଡ଼ିଲେ ହସ ମାଡ଼େ । ସେ ଆଦର ଭିତରେ ଯେ କୁଟିଳତା ପୂରି ରହିଥିଲା, ସେ ଦିନ ମୁଁ ଜାଣିପାରି ନଥିଲି ।

ସାହେବ ସେଦିନ ମୋତେ ଆଦର କରି ସୋଫା ଉପରେ ବସିବାକୁ କହିଲେ ଓ କଫି ଖାଇବାକୁ ଦେଲେ । ଏହା ବୋଧେ କୌଣସି ଓଭରସିଅରଙ୍କ ଭାଗ୍ୟରେ ଜୁଟି ନଥିବ । ତା ପରେ ସାହେବ ମତେ ଅତି ନରମ ସ୍ୱରରେ କହିଲେ — ତୁମକୁ ବିନା କାରଣରେ ସସପେଣ୍ଡ କରିଦିଆ ଯାଇଛି, ସେଥିପାଇଁ ମୁଁ ଅନୁତପ୍ତ । ଆଜି ପନ୍ଦର ଦିନ ପରେ ତୁମକୁ ପୁନର୍ନିଯୁକ୍ତି ଦିଆଯିବ । ତୁମ ପରି ସଚ୍ଚୋଟ୍ ଓଭରସିଅର ନାହାନ୍ତି । ତୁମପରି ଲୋକ ନାଁରେ ସେ ଘୃଣ୍ୟ ବିଶ୍ରୀ ଏତେ ଅଭିଯୋଗ କଲା ଯେ, ଯେ କେହି ଲୋକ ବିଶ୍ୱାସ କରିଯିବ । ଲୋକଟା ଯେ ଏତେ ମିଛ କହିପାରେ, ମୁଁ ଜାଣି ପାରି ନଥିଲି । ଅଜ କାଲି କାହା କଥାକୁ

Digitized by srujanika@gmail.com

ବିଶ୍ୱାସ କରିବା ଉଚିତ ନୁହେଁ । ଯାହା ହବାର ଥିଲା, ତା ଘଟିଗଲା । ତୁମେ ଏଥର ସରକାରଙ୍କ ବିରୁଦ୍ଧରେ ଯେଉଁ କେସ୍ ଦାଖଲ କରିଛ, ତାକୁ କୋର୍ଟରୁ ଫେରାଇ ଆଣ, କେସ୍ ଉଠାଇ ଅଣି ଚାକିରୀରେ ଯୋଗ ଦିଅ । ମୁଁ ସ୍ୱୀ ଭିତରେ ତୁମର ପୁନର୍ନିଯୁକ୍ତି ପତ୍ର ପଠାଇ ଦେଉଛି ।

ସାହେବଙ୍କ କଥା ଶୁଣି ମନ ମୋର ଖୁସି ହୋଇଗଲା । ସଙ୍ଗେ ସଙ୍ଗେ କହିଲି— ଆପଣ ଯେତେବେଳେ ଏତେ କଥା କହୁଛନ୍ତି ମୁଁ ନିଶ୍ଚୟ କେସ୍ ଉଠାଇ ଆଣିବି । ତା ପରେ ଅଳ୍ପ ସମୟ ଏଣୁ ତେଣୁ କଥାବାର୍ତ୍ତା ହୋଇ ଘରକୁ ଫେରିଲି ।

ତାର ଅଳ୍ପଦିନ ପରେ ମୁଁ କୋର୍ଟରୁ କେସ୍ ଉଠାଇ ଅଣିଲି । କିନ୍ତୁ ସାହେବଙ୍କଠାରୁ ପୁନର୍ନିଯୁକ୍ତି ପତ୍ର ପାଇଲିନି । ସାହେବଙ୍କ ପାଖକୁ ଦୌଡ଼ି ଦୌଡ଼ି ଗୋଡ଼ରୁ ପାଣି ମଲା, କିନ୍ତୁ ସାହେବଙ୍କୁ ଦେଖା କରିବାପାଇଁ ଅନୁମତି ମିଳିଲାନି । ସାହେବଙ୍କ ପାଖକୁ କାକୁତି ମିନତି କରି କେତେ ଚିଠି ଦେଲି । ପୁନର୍ନିଯୁକ୍ତି କରନ୍ତୁ ନହେଲେ ମୋ ଇସ୍ତଫାପତ୍ର ଗ୍ରହଣ କରନ୍ତୁ । କିନ୍ତୁ ମୋର ମିନତି ଗୁହାରି ତାଙ୍କ କର୍ଣ୍ଣଗହ୍ୱରରେ ପ୍ରବେଶ କଲାନି । ମୋର ଦିନଗୁଡ଼ିକ ଉଦାସ ବିକଳରେ କଟିବାକୁ ଲାଗିଲା । କେଉଁକ ଉପାୟରେ ଦିନଗୁଡ଼ାକ କଟିବାକୁ ଲାଗିଲା । ପିଲାଙ୍କୁ ପେଟ ପୂରା ମୁଠେ ଖାଇବାକୁ ଦେଇ ପାରିଲିନି । ସ୍ତ୍ରୀର ସେହି ଚିରା ଲୁଗା, ଶୁଖିଲା ମୁହଁ ଦେଖି ମୋ ଆଖିରୁ ଲୁହ ଝରିଲା । ବିନା ଦୋଷରେ କି ଦଣ୍ଡ ପାଇଲି । ତଥାପି ମୁଁ ବିଶ୍ୱାସ ରଖିଥାଏ ଯେ କେଉଁନା କେଉଁ ଦିନେ ମୋ ଦୁଃଖର ଅବସାନ ଘଟିବ । କିନ୍ତୁ ବର୍ଷ

Digitized by srujanika@gmail.com

ଦିନାଧର ଦୁଃଖ ଭୋଗିବା ପରେ ବି ମୋ ଦୁଃଖର ପରିସମାପ୍ତି ଘଟିଲାନି । ଶିଟ୍ ଉଠାଇଆଣିବା ପରଠାରୁ ପ୍ରାୟ ଭିତରେ ଅର୍ଦ୍ଧ ଡନବର୍ଷ ଅତୀତ ହୋଇଗଲାଣି । କିନ୍ତୁ ତାହାଠାରୁ କିଛି ଚିଠି ବା ଉତ୍ତର ପାଇଲିନି । ଗଲା କାଲି ସରକାରଙ୍କ ଠାରୁ ଚିଠି ପାଇଲି ଯେ, ମୋତେ ଚାକିରିରୁ ବହିଷ୍କୃତ କରି ଦିଆଗଲା । ଏତେବଡ଼ ଅନ୍ୟାୟକୁ ସହି ଯିବାର ଶକ୍ତି ମୋର ଆଉ ନାହିଁ । ସମ୍ପାଦକ ମହାଶୟ, ଏଥର କୁହନ୍ତୁ ମୋତେ ବିନା ଦୋଷରେ କି ଦଣ୍ଡ ? ଆଜି ଜନସାଧାରଣ ବିଚାର କରନ୍ତୁ, ଏ ଅନ୍ୟାୟ ଅବିଚାର ପାଇଁ ଦାୟୀ କିଏ ? ସତ୍ୟ, ନ୍ୟାୟ, ଧର୍ମକୁ ଜଗିଲେ ଲୋକ କିପରି ଦଳିତ ନିଷ୍ପେଷିତ ହୋଇଯାଏ, ତାର ପ୍ରମାଣ ମୁଁ । ଆଉ ଉଚ୍ଚ ପଦସ୍ଥ କର୍ମଚାରୀ ଧନର ଲୋଭରେ କିପରି ନୃଶଂସ ହୋଇ ଉଠନ୍ତି, ତାର ପ୍ରମାଣ ଆମର ବଡ଼ସାହେବ ଓ କଣ୍ଟ୍ରାକ୍ଟର ପୁରେନ୍ଦ୍ର ବିଶ୍ୱାଳ । ଏମାନଙ୍କ ପାଇଁ କଣ ଆଇନ୍ କାନୁନ୍ କିଛି ନାହିଁ ? ଆଜି ଆଖିରେ ଲୁହ ଭରି, ଚିରଦିନ ପାଇଁ ସମସ୍ତଙ୍କ ଠାରୁ ବିଦାୟ ନେଉଛି । ଶେଷରେ କାଠଯୋଡ଼ୀର ପବିତ୍ର ସ୍ରୋତ ହିଁ ଶାନ୍ତି ଦେବ । ବିଦାୟ ।

। ଇତି ।

ଆପଣଙ୍କର

ସ ନା ତ ନ ମିଶ୍ର

ଦିନ ବାରଟା ମଙ୍ଗଳାବାଗ ଥାନା ଅଫିସରେ ଫୋନ୍ କ୍ରିଂ, କ୍ରିଂ ହୋଇ ବାଜି ଉଠିଲା । ଫୋନ୍ ଧରିଲେ ଥାନା ଇନ୍‌ଚାର୍ଜ ଅଫିସର ସୁଧାକର ବାବୁ ।

Digitized by srujanika@gmail.com

ଫୋନ୍ ଆସିଛି, କଲେଜଛକରେ ଥିବା ଷ୍ଟେଟବ୍ୟାଙ୍କ ଭିତରୁ ଜଣେ ଭଦ୍ରଲୋକଙ୍କ ହାତରୁ ତିନିଲକ୍ଷ ଟଙ୍କାର ଥଳିଟିଏ ହରଣଚାଳ ହୋଇଯାଇଛି ।

ଫୋନ ରଖିଦେଇ ସଶସ୍ତ୍ର ପୋଲିସ ଭ୍ୟାନ୍ ଛୁଟିଲେ ବ୍ୟାଙ୍କ ଅଭିମୁଖେ । ଭ୍ୟାନ୍‌ଟିକୁ ବ୍ୟାଙ୍କ ସାମନାରେ ରଖି ବ୍ୟାଙ୍କ ଚାରିପାଖ ପୋଲିସ ଘେରାଉ କଲେ । ବ୍ୟାଙ୍କ ଭିତରକୁ ଗଲେ । ଟାଉନ୍ ଡି.ଏସ୍.ପି., ପୋଲିସ୍ ଇନସ୍‌ପେକ୍ଟର ଓ ସବଇନସ୍-ପେକ୍ଟର । ସମସ୍ତେ ନୀରବ ନିସ୍ତବ୍ଧହୋଇ ବସି ରହିଛନ୍ତି । ସମସ୍ତଙ୍କ ମୁହଁରେ ଆତଙ୍କର ଚିହ୍ନ ।

ଡି.ଏସ୍.ପି. ଟଙ୍କା ଚୋରିଯାଇଥିବା ଭଦ୍ରଲୋକଙ୍କ ପାଖକୁ ଯାଇ ଜିଜ୍ଞାସା ଆରମ୍ଭ କରିଦେଲେ । ଭଦ୍ରଲୋକଙ୍କୁ ଚାହିଁ କହିଲେ, "ରାମଲାଲ ବାବୁ, ଦିନଦ୍ୱିପ୍ରହରରେ ପୁଣି ଆପଣଙ୍କପରି ଲୋକ ହାତରୁ ଟଙ୍କା ଚୋରି ହୋଇଗଲା ! ଆଶ୍ଚର୍ଯ୍ୟ କଥା, କୁହନ୍ତୁ ତ କିପରି ଏଣେ ହେଲା ?"

ରାମଲାଲ ବାବୁ, ଡି.ଏସ୍.ପିଙ୍କୁ ଚାହିଁ କହିଲେ, "ଆପଣମାନେ ଥାଇ ଥାଇ ଯଦି ଦିନ ଦ୍ୱିପ୍ରହରରେ ଲୋକ ଏପରି କୌଶଳ କରି ଆଖିପିଛୁଳାକେ ଟଙ୍କା ନେଇ ଯିବେ, ତେବେ ପୋଲିସ ବାହିନୀ ଆଉ କରୁଛନ୍ତି କଣ ? ଆମ ଧନ ଜୀବନ ବଡ଼ ବିପଦ ସଙ୍କୁଳ ।"

"ରାମଲାଲ ବାବୁ, ଆପଣ ସେ ସବୁ କଥା ପରେ କହିବେ, ଆଗ କୁହନ୍ତୁ ଆପଣଙ୍କ ହାତରୁ ଟଙ୍କା ଥଳୀ କିପରି ଚୋରି ହେଲା ?"

Digitized by srujanika@gmail.com

"ଟଙ୍କା ସିନା ବର୍ତ୍ତମାନ ଗଲା, କିନ୍ତୁ ମଜାଟେକ ମୋ ଘରକୁ କୋଟାଏ ଚିଠି କିଏ ଦେଇଥିଲା ।"

"ଆଚ୍ଛା ସେ ଚିଠିଟା ଆଗ ଦେଖନ୍ତୁ ତ ।"

ରାମଲାଲବାବୁ ଗ୍ଲଭ ପକେଟରୁ ଖଣ୍ଡିଏ ଚିଠି କାଢ଼ି ଡି.ଏସ୍.ପିଙ୍କ ହାତକୁ ବଢ଼ାଇ ଦେଲେ ।

ଚିଠିଟି ଡି.ଏସ୍.ପି ସାହେବ ନେଇ ପଢ଼ିବାକୁ ଲାଗିଲେ । ଚିଠିରେ ଲେଖାଅଛି—

ପ୍ରିୟ ରାମଲାଲ ବାବୁ,

ନମସ୍କାର । ଆପଣଙ୍କ ପାଖରେ ଥିବା ତିନିଲକ୍ଷ ଟଙ୍କା ଅଳୀଟି ବ୍ୟାଙ୍କରେ ଥୋଇବା ପୂର୍ବରୁ ମୋତେ ଦାନ କରିଦିଅନ୍ତୁ । ଯଦି ମୋତେ ଦେବାକୁ ଆପଣଙ୍କ ମନ ନହେଉଛି, ତେବେ ସେ ତିନିଲକ୍ଷ ଟଙ୍କା ଦେଶରକ୍ଷା ପାଣ୍ଠିକୁ ଦାନ କରି ଦିଅନ୍ତୁ ।

ସେ ଟଙ୍କା ଆପଣଙ୍କର ନୁହେଁ । ସେ ଟଙ୍କା ଜନ ସାଧାରଣଙ୍କର । ସେ ଟଙ୍କାତକ ଆପଣ ଦାନ କଲେ ଆପଣଙ୍କର କଳଙ୍କିତ ପାପର ପ୍ରାୟଶ୍ଚିତ ହୋଇଯିବ । ଆପଣଙ୍କର ପାପ କାମ କଣ, ତାହାମୁଁ କହୁଦେଉଛି ଶୁଣନ୍ତୁ, ଆପଣ ଗୁଜଜ ଦେହରେ ଗ୍ଲେଟ ଗ୍ଲେଟ ଧୂଆ ଗୋଡ ମିଶାଉଛନ୍ତି, କପା ମଞ୍ଜିକୁ ପେଲି କରି ସୋରିଷ ତେଲରେ ମିଶାଇ ଦୁନିଆଁ ଆଖିରେ ଧୂଳି ଦେଉଛନ୍ତି । ମୁଁ ଯଦି ମିଛ କହୁଛି ବୋଲି ଆପଣ ପୋଲିସ୍

ସାରଙ୍କ ଆଗରେ କହିବେ, ତେବେ ପ୍ରମାଣ ମଧ୍ୟ ଦେଇ ଦେଉଛୁ । ଆପଣଙ୍କର ଗୃଜଳଆଗଞ୍ଜରେ ଥିବା ଭାଇ ହୀରାଲାଲ ବାବୁଙ୍କ ଘରେ କେତେ ଧୂଆଁ ଗୋଡ଼ ବସ୍ତା ଓ କପା ମଂଜ ବସ୍ତା ରଖିଛନ୍ତି, ପୋଲିସ ଭାଇ ଯାଇ ଦେଖି ଆସନ୍ତୁ ।

ଆପଣ ଯଦି ଏ ତିନିଲକ୍ଷ ଟଙ୍କା ଦାନ ନକରି ବ୍ୟାଙ୍କରେ ରଖନ୍ତି, ତେବେ ଜବରଦସ୍ତି ସେ ଟଙ୍କା ମୁଁ ନେଇଯିବି । ଅପଣ ଯେପରି ଦିନ ଦ୍ୱିପ୍ରହରରେ ଗୋଡ଼ମିଶା ଗୁଜୁଳି, କଙ୍କିଆ ମଞ୍ଜି ମିଶା ଅଟା, କପାମଂଜ ତେଲ ବିକ୍ରୀ କରି ଠକୁଛନ୍ତି, ସେହିପରି ମୋ ପାଖରେ ଆପଣ ଦିନ ଦ୍ୱିପ୍ରହରରେ ଠକା ଯିବେ । ଆପଣଙ୍କର ତ ସେ ଟଙ୍କା ଝାଳବୁହା ଧନ ନୁହେଁ । ଦାନ ଦବାକୁ ବାଧୁଛି କାହିଁକି ? ଆପଣ ଦିନ ବାରଟା ଭିତରେ ଟଙ୍କା ଥଳୀଟି ମୋତେ ଦେଇ ଯାଆନ୍ତୁ । ମୁଁ ଅପଣଙ୍କ ଫାଟକ ବାହାରେ ଅପେକ୍ଷା କରିଥିବି । ଆପଣଙ୍କ ପାପ ଟଙ୍କାର ଅପେକ୍ଷାରେ ରହିଲି । ଅଯଥାରେ ପୋଲିସର ସାହାଯ୍ୟ ଲୋଡ଼ନ୍ତୁନି । ରହିଲି

ଆପଣଙ୍କର

ଶତ୍ରୁ ଅପରାଧୀ

ଚିଠିଟି ପଢ଼ିସାରିବା ପରେ ଡ଼ି ଏସ୍ ପି କହିଲେ, "ଆପଣ ଗୁଜୁଳିରେ ଗୋଡ଼ମିଶାଇ ଏତେ ଟଙ୍କା ରଖିଛନ୍ତି ? ଅପରାଧୀ ବୋଧେ ଯାହା ଲେଖିଛି ସତ ?

ରାମଲାଲ ବାବୁ ଥର ଥର କଣ୍ଠରେ କହିଲେ, "ନାହିଁ ଆଜ୍ଞା ଏ ଚିଠି ମିଛି ଆପଣ ମତେ ଅବିଶ୍ୱାସ କରୁଛନ୍ତି ?

Digitized by srujanika@gmail.com

"ହଜୁ, କୁହନ୍ତୁ ଏଥର ଆପଣ ଚିଠି ପାଇବା ପରେ କଣ ହେଲା ।"

"ଗୋଟାଏ ଷ୍ଟେଚର ଧମକରେ ଉଡ଼ିଯିବା ଲୋକ ମୁଁ ନୁହେଁ । ବାରଟା ବାଜିବା ପରେ ବ୍ୟାଙ୍କରେ ଟଙ୍କା ରଖିବା ପାଇଁ ମୁଁ ଅସିଥିଲି । ଟଙ୍କା ନେଇ ଆସିଲି ବେଳେ ରାସ୍ତାରେ କୌଣସି ବିପଦ ପଡ଼ିନ । ନିର୍ବିଘ୍ନରେ ବ୍ୟାଙ୍କରେ ପହଞ୍ଚିଲି । ଅସି ଏହି ବେଞ୍ଚରେ ବସି ଶାନ୍ତି ଅନୁଭବ କରୁଥିଲି । ମୁଁ ଏଠାରେ ବସିବା ପାଞ୍ଚମିନଟ୍ ପରେ ଜଣେ ଭଦ୍ରଲୋକ ଆସି ମୋ ପାଖରେ ବସି ପଡ଼ି କହିଲେ ଶୁଣୁ ଜୀ, ବ୍ୟାଗଟା ଦେଲେ, ତାହାରେ ଟିକିଏ କାମଅଛି । ସେ ଏହା କହି ମୋ ହାତରୁ ଟଙ୍କା ବ୍ୟାଗଟି ନେଇ ଚାଲିଗଲେ । ମୁଁ ପାଟି କରିବି ବୋଲି ସେତେ ଚେଷ୍ଟା କଲେବି ପାଟି ଫିଟିଲା ନି । ଉଠି ଦୌଡ଼ିଯାଇ ଧରିବି ବୋଲି ବହୁତ ଚେଷ୍ଟା କଲି, କିନ୍ତୁ ଉଠି ପାରିଲି ନି । ମୁଁ ଯାହା କରିବାକୁ ଚେଷ୍ଟା କଲି, କିଛି କରି ପାରିଲିନି । ସେ ଲୋକ ଚାଲିଯିବାର ପ୍ରାୟ ଘଣ୍ଟାଏ ପରେ ମୋ ପାଟି ଖୋଲିଲା । ଏମିତ ମୋର କଣ ହେଲା ମୁଁ ଜାଣି ପାରିଲି ନି । ମୋତେ କହି ମୋ ହାତରୁ ଟଙ୍କା ନେଇଗଲେ, ଅଥଚ ମୁଁ କିଛି କରି ପାରିଲି ନି ଏହାଠାରୁ ବଳି ଆଶ୍ଚର୍ଯ୍ୟର କଥା ଆଉ କଣ ହୋଇ ପାରେ ?"

ଡ଼ି, ଏସ୍, ପି, ରାମଲାଲ ବାବୁଙ୍କ ଠାରୁ ଏ ସମସ୍ତ ଘଟଣା ଶୁଣି ସାରିବାପରେ ସେଠାରେ ଥିବା ଅନ୍ୟାନ୍ୟ ଲୋକ ମାନଙ୍କୁ ପଚାରିଲେ, "ରାମଲାଲ ବାବୁ ଯାହା କହୁଛନ୍ତି, ଏ ଘଟଣା କଣ ସତ୍ୟ ? ଆପଣ ମାନେ ଦେଖିଛନ୍ତି ରାମଲାଲବାବୁଙ୍କ ପାଖକୁ କେହି ଭଦ୍ରଲୋକ ଆସି ବ୍ୟାଗ ନେଇ ଗଲେ ?"

Digitized by srujanika@gmail.com

ସମସ୍ତେ କହିଲେ, "ହଁ । ଜଣେ ଯୁବକ ବାଦାମୀ ରଙ୍ଗର ଟେରିକଟ୍ ସୁଟ୍ ପିନ୍ଧିଥାନ୍ତି । ଆଖିରେ ଚଷମା । ଦେଖିବାକୁ ସୁଶ୍ରୀ । ଯୁବକ ଜଣକ ଆସି କହିଲେ, "ଗୁରୁଜୀ, ତୁମେ ବ୍ୟାଗଟା ନେଇ ଚାଲି ଆସିଛ, ମୁଁ ଘରେ ଖୋଜୁଛି । ବ୍ୟାଗଟା ଦେଲ, ମୁଁ ଆଗ ଆର କାମଟା ସାରି ଦେଇ ଆସେ ।" ଏତିକି କହି ରାମଲାଲ ବାବୁଙ୍କ ବ୍ୟାଗଟି ନେଇ ଚାଲିଗଲେ । ରାମଲାଲ ବାବୁ କିଛି କହିଲେନି । ଆମେ ଭାବୁଥିଲୁ ଯୁବକ ଜଣକ ତାଙ୍କର ଆତ୍ମୀୟ । କିନ୍ତୁ ଯୁବକ ଚାଲିଯିବାର ପ୍ରାୟ ୪୫।୫୦ ମିନିଟ୍ ପରେ ରାମଲାଲବାବୁ ପାଟିକରି ଉଠିଲେ ଯେ ତାଙ୍କ ଟଙ୍କା ବ୍ୟାଗ କିଏ ନେଇଗଲା । ସେ ଯୁବକ କିଏସେ ରାମଲାଲ ବାବୁ ତାକୁ ଚିହ୍ନନ୍ତିନି । ତା ପରେ ଆପଣଙ୍କ ପାଖକୁ ଫୋନ କଲୁ । ସୁଧା ଭିତରେ ତ ପୁଣି ଅଧଘଣ୍ଟାଏ ବିତି ଗଲାଣି ।"

ଡି.ଏସ୍.ପି ଏସବୁ ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ, "ଏତ ଏକ ନୂଆପ୍ରକାର ଠକେଇ । କିଏ ସେହି ଦୁଃସାହସୀ ଯୁବକ ?"

"ଆଚ୍ଛା ରାମଲାଲ ବାବୁ, ଟଙ୍କା ନେଇଗଲା ବେଳେ ଆପଣଙ୍କୁ କିଛି ଦେଇନାହିଁ ?" "ହଁ ସେ କଥା କହିବାକୁ ମୁଁ ଭୁଲିଯାଇଛି । ବ୍ୟାଗଟା ନେଇଗଲାବେଳେ ମୋ ହାତରେ ଗୋଟିଏ ଚିଠି ରଖି ଯାଇଛି । ସେ ଚିଠିଟା ଏଇ ନିଅନ୍ତୁ ।"

ଚିଠିଟି ନେଇ ଡି.ଏସ୍.ପି, ସାହେବ ପଢ଼ିବାକୁ ଲାଗିଲେ । ଲେଖାଅଛି—

Digitized by srujanika@gmail.com

ପ୍ରିୟ ରାମଲାଲ ବାବୁ,

ଆପଣଙ୍କୁ ଏତେ କରି କହିବା ସତ୍ତ୍ୱେ ବି ଆପଣ ଦବାକୁ ମନ ବଳାଇଲେନି । ତରବରରେ ହୋଇ ଧାଇଁ ଆସିଲେ ବ୍ୟାଙ୍କରୁ ଜମା ବଢ଼ାଇବାକୁ । କିନ୍ତୁ ସେ ଟଙ୍କା ଗୁଡ଼ାକ ଆପଣଙ୍କ ହାତରେ ଥାଇ ମୋତେ ନିମନ୍ତ୍ରଣ କରୁଛନ୍ତି, ତାଙ୍କୁ ଉଦ୍ଧାର କରିବାକୁ । ମୁଁ ଏ ଟଙ୍କା ନେଇ ଯାଉଛି ଦେଶରକ୍ଷା ପାଣ୍ଠିକୁ ଦାନ କରିଦେବି । ଆଉ ଟଙ୍କା ପାଇବା ଆଶା ବା ମୋତେ ଧରିବା ଆଶା ରଖନ୍ତୁନି । ବୃଥାରେ ପୋଲିସର ବାହାଦୁରୀ ତଳେ ଆଶ୍ରୟ ନିଅନ୍ତୁ ନାହିଁ । ଏଥିକି ଆପଣଙ୍କୁ ସତର୍କ କରି କହୁଛି, ଆପଣ ଖାଦ୍ୟରେ ଅପମିଶ୍ରଣ କରନ୍ତୁ ନାହିଁ । ଆପଣ ଯଦି ମୋ କଥା ନ ମାନି ଖାଦ୍ୟରେ ପୁଣି ଅଖାଦ୍ୟ ମିଶାଇବେ, ତେବେ ଆପଣଙ୍କର ସମସ୍ତ ସମ୍ପତ୍ତି ମୁଁ ଲୁଟ୍ କରିନେବି । ଆପଣ ମୋର କିଛି କରି ପାରିବେନି । ପୋଲିସଙ୍କୁ ମୁଁ ଭୟ କରେନି । ତେଣୁ ସାବଧାନ ରହନ୍ତୁ । ଆଉ ଅନ୍ୟାୟ କରନ୍ତୁ ନାହିଁ । ଦେଖିଲେତ କିପରି ସମସ୍ତଙ୍କ ସାମନାରେ ଆପଣଙ୍କ ହାତରୁ ଟଙ୍କା ନେଇ ଯାଉଛି । ନମସ୍ତେ, ଦରକାର ପଡ଼ିଲେ ଆଉଥରେ ଦେଖା କରିବି ।

॥ ଇତି ॥
ଆପଣଙ୍କର
ଶତ୍ରୁ ଅପରାଧୀ

ଚିଠିଟି ପଢ଼ି ଡି.ଏସ୍.ପି ସାହେବ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ ଅପରାଧୀ ସମସ୍ତଙ୍କ ଆଗେ 'ଚମତ୍କାର ଅଭିନୟ କରି ଚାଲିଗଲା । କେହି ତାକୁ ସନ୍ଦେହ କରିବାର ସୁଯୋଗବି ପାଇଲେନି ।

Digitized by srujanika@gmail.com

ଏମିତି ଠାକେଇ ଶୁଣି ସମସ୍ତେ ସ୍ତବ୍ଧ ହୋଇ ଠିଆ ହୋଇ ରହିଲେ । କାହାର ମୁହଁରେ ଭାଷା ନାହିଁ । ପୋଲିସ ଡ଼ି.ଏସ୍.ପି ଇନକ୍ୱାରି କରିବାରେ ଲାଗିଲେ ।

କଟକ ସହରର ଗୁରିଆଡ଼େ ଏହି କଥା ବିଜୁଳି ପରି ଖେଳି ଗଲାଣି । ଧନୀ ମାନେ ଭୟରେ ଶିହରି ଉଠିଲେଣି । କେତେବେଳେ କେଉଁ ଅବସ୍ଥାରେ ଅପରାଧୀ ଆସି ତାଙ୍କ ପାଖରେ ପହଞ୍ଚିବ । ଓହୋ ସେ ଦୁଃସାହସିକ ! କିଏ ସେହି ମାୟା ରୂପୀ ଅପରାଧୀ ?

× × ×

୧୯୬୧ ମସିହା ଜୁଲାଇ ମାସର ୧୭ ତାରିଖ । ପହିଲି ଆଷାଢର ମେଘ ଅକାଶରେ ଝୁଙ୍କି ମାରୁଛି । ଗୁରିଆଡ଼େ ମେଘ ଅନ୍ଧକାରକୁ ଆଲୋକିତ କରି ବିଜୁଳି ଝଲକି ଉଠୁଛି । ସେହି ଟୁପୁ ଟୁପୁ ବର୍ଷାରେ ଅଲୋକ ସଜ୍ଜାରେ ହସିଉଠୁଛି ରେଭେନ୍ସା କଲେଜ । ଆଜି ଓଡ଼ିଶାରେ ହର୍ଷ ଉଠୁଛି ଏକ ଜ୍ୱଳନ୍ତତାରକା । ଓଡ଼ିଶାବାସୀଙ୍କ ପକ୍ଷରେ ଆଛି ଏକ ମହାନ ଗୌରବ । କିନ୍ତୁ ଯାହାଲାଗି ଓଡ଼ିଶା ଅଜି ଏତେ ଗୌରବାନ୍ୱିତ, ସେ ଆଜି ନାହାନ୍ତି । ପ୍ରକୃତି ଆଜି ଟୁପୁ ଟୁପୁ ବର୍ଷା ପକାଇ ଆନନ୍ଦରେ ଅଶ୍ରୁ ବିସର୍ଜନ କରୁଛି, ସେ ମହାନ ବ୍ୟକ୍ତିଙ୍କ ଅନୁପସ୍ଥିତିରେ ।

ଅଜି ସମସ୍ତଙ୍କ ମୁଁହରେ ଡ଼କ୍ଟର ମିଶ୍ରଙ୍କର ଉଚ୍ଛ୍ୱସିତ ପ୍ରଶଂସା, ଡ଼କ୍ଟରମିଶ୍ର ତାଙ୍କ ଉଚ୍ଚକୋଟିର ଗବେଷଣା ଯୋଗୁ ଆଜି ଜାତୀୟ ସମ୍ମାନ ପାଇଛନ୍ତି । ରେଡ଼ିଓ, ଖବର କାଗଜ, ରାସ୍ତା ଘାଟ

Digitized by srujanika@gmail.com

ସବୁରି ମୁହଁରେ ଡ଼କ୍ଟରମିଶ୍ରଙ୍କର ଉଚ୍ଛ୍ୱସିତ ପ୍ରଶଂସା । ଖବର କାଗଜ ମାନଙ୍କରେ ବାହାରିଛି ବଡ଼ ବଡ଼ ଫଟୋ ଓ ଜୀବନୀ ଏବଂ ବିରାଟ ବ୍ୟକ୍ତିତ୍ୱ । ଡ଼କ୍ଟର ମିଶ୍ରଙ୍କ ସହିତ ସ୍ୱପ୍ନା ଦେବୀ ଗବେଷଣା କରିଥିବାରୁ ସ୍ୱପ୍ନା ଦେବୀଙ୍କ ଫଟୋ ଓ ଜୀବନୀ ମଧ୍ୟ ବାହାରିଛି । ସ୍ୱପ୍ନାଦେବୀଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ରେଭେନ୍‌ସା କଲେଜରେ ଆଜି ଏକ ବିରାଟ ସଭା ଅନୁଷ୍ଠିତ ହେଉଛି ।

ରେଭେନ୍‌ସା କଲେଜ ପ୍ରାଙ୍ଗଣଟି ତୋରଣଦ୍ୱାର ସଜ୍ଜା ହୋଇଛି । ଛାତ୍ର,ଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକାଙ୍କ କୋଳାହଳରେ ମୁଖରିତ ହୋଇ ଉଠୁଛି । ସୁସଜ୍ଜିତ ମଣ୍ଡପ ଉପରେ ଶୋଭାପାଉଛି ଡ଼କ୍ଟର ମିଶ୍ରଙ୍କର ଏକ ତୈଳଚିତ୍ର । ତୈଳଚିତ୍ର ଚତୁଃପାର୍ଶ୍ୱେ ନାନା ପ୍ରକାର ଫୁଲ ପତ୍ର ସଜାଯାଇଛି । ଧୂପର ସୁଗନ୍ଧରେ ମହକି ଉଠୁଛି ସଭାସ୍ଥଳୀ । ତୈଳଚିତ୍ର ଠାରୁ ଅଳ୍ପଦୂରରେ ବସିଥାନ୍ତି ସ୍ୱପ୍ନା ଦେବୀ । ପିନ୍ଧିଥାନ୍ତି ଶୁଭ୍ରଶାଢ଼ୀ । ମୁହଁଟି ତାଙ୍କର ଗମ୍ଭୀର । ଆଖି ଦୁଇଟି ଛଳ ଛଳ । ଏତେବଡ଼ ଗୌରବ ଦିନରେ ମୁହଁରେ ନାହିଁ ତାଙ୍କର ଦରଫୁଟା ହସ । ତଥାପି ମୁହଁଟି ତାଙ୍କର ଦିଶୁଥାଏ ଦୀପ୍ତିମୟ ।

ସଭାକାର୍ଯ୍ୟ ଆରମ୍ଭ ହେଲା । ବିଭିନ୍ନ ବକ୍ତାମାନେ ନିଜ ନିଜର ଭାଷଣ ଦେବାକୁ ଲାଗିଲେ । ସମସ୍ତେ ଡକ୍ଟରମିଶ୍ରଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇବା ସଙ୍ଗେ ସଙ୍ଗେ ତାଙ୍କ ଗବେଷଣାକୁ ପ୍ରଶଂସା କରୁଥାନ୍ତି ।

ଜଣେ ଅଧ୍ୟାପକ ନିଜ ଭାଷଣରେ କହିଲେ ଯେ, ଆମ ସରକାରଙ୍କର ଶିକ୍ଷାବିଭାଗ ପ୍ରତି ଅବହେଳା ଯୋଗୁଁ ଆଜି ଆମ ସମାଜ ଶିକ୍ଷା ଦିଗରେ ବିଶେଷ ଆଗେଇ ପାରୁନାହିଁ । ଶିକ୍ଷକ

Digitized by srujanika@gmail.com

ମାନଙ୍କ ପ୍ରତି ଅବହେଳା କରାଯିବାରୁ ଡକ୍ଟର ମିଶ୍ରଙ୍କ ମତ ଉଜ୍ଜ୍ୱଳଜ୍ୟୋତି ଅଦନ ଖଣ୍ଡରେ ଲଭି ଯାଇଛି । ଅନ୍ୟ ଦେଶରେ ଶିକ୍ଷାକୁ ସର୍ବୋଚ୍ଚସ୍ଥାନ ଦିଅଯାଉଥିବା ବେଳେ ଆମ ଓଡ଼ିଶାରେ ଶିକ୍ଷାର ସ୍ଥାନଯେ କେତେ ତଳେ ପଡ଼ିଛି, ତାହା ଭାବିଲେ ବଡ଼ ଦୁଃଖ ଲାଗେ । ଆଉ କେତେଦିନ ଗଲେ ଦେଖାଯିବଯେ ଶିକ୍ଷକ ବା ଅଧ୍ୟାପକ ଜୀବନ ଯାପନ କରିବାକୁ କେହି ରାଜି ହେବେନି । ଅଧ୍ୟାପକ ଜୀବନରେ ଯେଉଁ ଅଭାବ ଅନାଟନ ଦେଖା ଦେଉଛି ତାହା କଣ ଆମ ସରକାରଙ୍କର ଦେଖିବା ଉଚିତ ନୁହେଁ କି ? ଶେଷରେ ଏତିକି ଅନୁରୋଧ ଯେ ଶିକ୍ଷା ବିଭାଗ ପ୍ରତି ସରକାର ଦୃଷ୍ଟି ଦିଅନ୍ତୁ । ଡକ୍ଟର ମିଶ୍ରଙ୍କର କପରି ଉପଯୁକ୍ତ ସ୍ମୃତି ରକ୍ଷା କରାଯିବ, ସେ ବିଷୟରେ ସମସ୍ତେ ଆଲୋଚନାକରି ପ୍ରସ୍ତାବ ଦିଅନ୍ତୁ । ଏହାପରେ ବିଭିନ୍ନ ବକ୍ତା ନିଜ ନିଜର ବକ୍ତବ୍ୟ ପ୍ରକାଶ କରୁଥାନ୍ତି ।

ଶେଷରେ ସୁପ୍ରଭାଦେବୀ ଭାଷଣ ଦେଇ କହିଲେ, "ଯାହାଙ୍କୁ ନେଇ ଆମର ଗୌରବ, ସେ ଆଜି ନାହାନ୍ତି । ଆଜିର ଏହି ଶୁଭ ଦିନଟି ଡକ୍ଟରମିଶ୍ରଙ୍କ ଅନୁପସ୍ଥିତି ଯୋଗୁଁ 'ବଡ଼ ଦୁଃଖ-ଦାୟକ ବୋଧ ହେଉଛି । ଡକ୍ଟର ମିଶ୍ର ଯେପରି ଜ୍ଞାନୀ ଥିଲେ, ସେପରି କର୍ମଠ ଓ ନିରଳସ ଥିଲେ । ଆଳସ୍ୟକୁ ସେ ନିଜର ଶତ୍ରୁ ମଣୁଥିଲେ । ତାଙ୍କ ଠାରୁ ଗବେଷଣା କରିବା ପାଇଁ ମୁଁ ଯେଉଁ ଉତ୍ସାହ ଓ ପ୍ରେରଣା ପାଉଥିଲି, ତାହା ଆଜି କଳ୍ପନାତୀତ । ଯେ କୌଣସି କାମ କରିବା ପାଇଁ ଉତ୍ସାହହିଁ ବଡ଼ ସମ୍ପଦ । ଆମର ଓଡ଼ିଶାରେ ଗବେଷଣା କରିବାପାଇଁ ବୈଜ୍ଞାନିକ ଗୁଣିଙ୍କର ଅଭାବ ନାହିଁ । ଅଭାବ ହେଉଛି ଗବେଷଣାଗାର ଓ ଉତ୍ସାହ । ଏହି କଥା ଡକ୍ଟରମିଶ୍ର ସବୁବେଳେ କହୁଥିଲେ ।

Digitized by srujanika@gmail.com

ଅମ ଓଡ଼ିଶାରେ ଯଦ୍ଧ ଗୋଟିଏ ଗବେଷଣାଗାର କରାଯାଆନ୍ତା, ତେବେ ଗବେଷଣା କରିବା ପାଇଁ ବହୁତ ସୁବିଧା ମିଳନ୍ତା । ମୋର ଇଚ୍ଛା ଉତ୍କଳମିଶ୍ରଙ୍କ ନାମରେ ଯଦ୍ଧ ଗୋଟିଏ ଗବେଷଣାଗାର ପ୍ରତିଷ୍ଠା କରାଯାଇ ପାରିବ, ଉତ୍କଳ ମିଶ୍ରଙ୍କର ସ୍ମୃତି ରକ୍ଷା କରାଯାଇ ପାରିବ। ଆଉ ଗୋଟିଏ କଥା ଆପଣମାନେ ଜାଣିଛନ୍ତି କି ନାହିଁ'ତେଣୁ କହୁଛି । ଉତ୍କଳମିଶ୍ର ତାଙ୍କର ସମ୍ପତ୍ତିକୁ ମୋ ନାମରେ ଉଇଲ୍ କରି ଯାଇଛନ୍ତି । ଅମେ ଯଦ୍ଧ ଗୋଟିଏ ଗବେଷଣାଗାର ପ୍ରତିଷ୍ଠା କରିବାକୁ ଚେଷ୍ଟାକରୁ, ତେବେ ଆମର ଟଙ୍କାର ଅଭାବ ହବନି । କିନ୍ତୁ ସେଥିପାଇଁ ଦୃଢ଼ମନୋବଳ ଦରକାର । ମୁଁ ଗବେଷଣା ଗାରଟି ପ୍ରତିଷ୍ଠା କରିବା ପାଇଁ ପ୍ରାଣପଣେ ଚେଷ୍ଟାକରିବ । ଏଥିପାଇଁ ଆପଣମାନଙ୍କର ସାହାଯ୍ୟ ସହାନୁଭୂତି ଆଶାକରେଁ । ଛାତ୍ର,ଛାତ୍ରୀ ଓ ଅଧ୍ୟାପକମାନେ ଉତ୍କଳମିଶ୍ରଙ୍କର ପରି କର୍ମଠ ହବାକୁ ଚେଷ୍ଟାକରନ୍ତୁ । କର୍ମକରି ଚାଲିଲେ ଫଳ ନିଶ୍ଚୟ ପ୍ରାପ୍ତି ହେବ ଆଉ ବିଶେଷ କିଛି କହିବି । ଉତ୍କଳଙ୍କର କୃତିତ୍ୱ ଯୋଗୁ ଆଜି ସମଗ୍ର ଭାରତବାସୀ ଗୌରବାନ୍ୱିତ । ଶେଷରେ ଉତ୍କଳମିଶ୍ରଙ୍କ ଆତ୍ମାପ୍ରତି ଭକ୍ତିର ପ୍ରଣତି ଜଣାଇ ମୁଁ ମୋ ବକ୍ତବ୍ୟ ଶେଷ କରୁଛି ।" × ×

ସଭାସ୍ଥଳ କମ୍ପି ଉଠିଲା ଘନ ଘନ କରତାଳିର ପ୍ରତିଧ୍ୱନିରେ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କହିଲେ ଯେ ସେ ଗବେଷଣାଗାର ପ୍ରତିଷ୍ଠା କରିବା ପାଇଁ ସରକାରଙ୍କ

Digitized by srujanika@gmail.com

ତରଫରୁ ପାଞ୍ଚଲକ୍ଷ ଟଙ୍କା ମଞ୍ଜୁର କରିଦେବେ । ଆଜି ସ୍ୱପ୍ନା-ଦେବୀଙ୍କ ଏହି ପ୍ରସ୍ତାବ ପାଇଁ ସେ ସ୍ୱପ୍ନା ଦେବୀଙ୍କୁ ଧନ୍ୟବାଦ ଜଣାଇଲେ । ମୁଖ୍ୟମନ୍ତ୍ରୀ ପାଞ୍ଚଲକ୍ଷ ଟଙ୍କାର ପ୍ରତିଶ୍ରୁତି ଦେବା ପରେ ସଭାର ଅନେକ ବ୍ୟକ୍ତି ଟଙ୍କା ଦାନ କରିବାକୁ ପ୍ରତିଶ୍ରୁତି ଦେଲେ । ରେଭେନ୍ସା କଲେଜର ଛାତ୍ରମାନଙ୍କ ତରଫରୁ ଛାତ୍ର ସଭାପତି ଚାନ୍ଦା ସଂଗ୍ରହ କରି ଚାରି ହଜାର ଟଙ୍କା ଗବେଷଣା ଗାର ପ୍ରତିଷ୍ଠା ପାଇଁ ଆଣି ଦେବେ ବୋଲି ପ୍ରକାଶ କଲେ ।

ଡକ୍ଟର ମିଶ୍ରଙ୍କ ସ୍ମୃତି ରକ୍ଷା ନାମରେ ଗୋଟିଏ ସ୍ମୃତି ରକ୍ଷା ପାଣ୍ଠି ଗଠିତ ହେଲା । ସେ ପାଣ୍ଠିର କୋଷାଧ୍ୟକ୍ଷ ରହିଲେ ସ୍ୱପ୍ନାଦେବୀ ଓ ସଭାପତି ରହିଲେ ରେଭେନ୍ସା କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ସଂଜୀବ ରଥ ଏବଂ କେତେଜଣ ଅଧ୍ୟାପକ ସଭ୍ୟ ରହିଲେ । ଏହା ପରେ ସଭା ଭଙ୍ଗ ହେଲା ।

× × ×

ବ୍ରହ୍ମପୁର ଡାକ୍ତରଖାନା ପାଖରୁ ଅଳ୍ପ ଦୂରରେ ଠିଆ-ହୋଇଛି ଏକ ଦୁଇମହଲା କୋଠା । ପାଖ ଆଖରେ ବିଶେଷ ଘର ନାହିଁ । ଘରଟିକୁ ଘେରି ରହିଛି ପ୍ରକାଣ୍ଡ ପାଚେରି, ପାଚେରି ଭିତରେ ଫଳ, ଫୁଲର ସୁନ୍ଦର ଉଦ୍ୟାନ । କିନ୍ତୁ ଘରଟିରେ ବେଶି ଲୋକ ଥିବାର ଜଣା ପଡ଼ୁନ । ରାସ୍ତାଟି ମଧ୍ୟ ଲୋକାରଣ୍ୟ ନୁହେଁ । କାଁ ଭାଁ ଚାଲିଛି ଗୋଟାଏ ଟେକ୍ସି ବା ସାଇକେଲ ରିକ୍ସା ।

ଦିନ ଦୁଇଟା । କୋଠାଟିର ଗେଟ୍ ଭିତରକୁ ପ୍ରବେଶ କଲା ଗୋଟାଏ ପୋଲିସ ଜିପ୍ । ଜିପ୍‌କୁ ଦାଣ୍ଡ ବାରଣ୍ଡା ପାଖରେ

Digitized by srujanika@gmail.com

ରଖି ବାରଣ୍ଡା ଉପରକୁ ଉଠିଲେ ପୋଲିସ ଏସ୍ ପି, ସାହେବ । ଦାଣ୍ଡ କବାଟଟି ବାହାରପଟୁ ଖୁବ ପଡ଼ିଥିଲା । ପକେଟରୁ ଗୁଚ୍ଛ କାଢ଼ି, କବାଟ ଖୋଲି ଭିତରକୁ ଯାଇ ଭିତର ପଟୁ କବାଟ ବନ୍ଦ କରିଦେଲେ । ଘର ଭିତରେ ସୋଫା ଉପରେ ବସିଛନ୍ତି ଜଣେ ଯୁବକ । ମୁହଁରେ ତାଙ୍କର ଭୟ ଓ କ୍ଳାନ୍ତିର ଚିହ୍ନ । ଅପଲକ ନୟନରେ ସେ ଗୁହିଁ ରହିଛନ୍ତି ଏସ୍. ପି. ସାହେବଙ୍କୁ ।

ଏସ୍,ପି ସାହେବ ଯୁବକ ଜଣକଙ୍କ ପାଖକୁ ଆଗେଇ ଗଲେ । ବାମ ହାତରେ ତାଙ୍କର ଗୋଟାଏ କାଗଜପତ୍ର ଫାଇଲ୍ । ଓ ଡାହାଣ ହାତରେ ପିସ୍ତଲ । ସେ ଯୁବକଙ୍କ ହାତକୁ କାଗଜ ଖଣ୍ଡିକ ବଢ଼ାଇ ଦେଇ କହିଲେ, "ଆପଣ ମୋ କଥା ମାନି ଶୀଘ୍ର ସ୍ଥା ତଳେ ଦସ୍ତଖତ କରନ୍ତୁ । ଆପଣ ଯଦି ଦସ୍ତଖତ ନକରିବେ, ତେବେ ଏ ପିସ୍ତଲରେ ଆପଣଙ୍କ ପ୍ରାଣ ନେଇଯିବ, ଆପଣ କିଛି କରିପାରିବେନି । ଆପଣଙ୍କ ଦସ୍ତଖତ ନେଇ ଯେ ଆପଣଙ୍କର ମୁଁ କିଛି କ୍ଷତି କରିବି, ଏ କଥା ଆପଣ ଭାବନ୍ତୁନି । କାହାର କ୍ଷତି କରିବା ମୋ ପ୍ରକୃତି ନୁହେଁ । କିନ୍ତୁ ଆପଣ ମୋ କଥା ନ ମାନିଲେ ଆପଣଙ୍କର କ୍ଷତି କରିବି । ସମୟ ମୋର ଖୁବ୍ ଅଳ୍ପ । ଦୟାକରି ଆପଣ ଶୀଘ୍ର ନିଜ ନାମଟା ଦସ୍ତଖତ କରି ଦିଅନ୍ତୁ ।"

ଯୁବକଟି ପ୍ରାଣ ଭୟରେ ଡର ଡର ହୋଇ ଦସ୍ତଖତ କରିଦେଲେ । ମୁହଁ ତାଙ୍କର ଭୟରେ କଳାକାଠ ପଡ଼ି ଯାଇଥାଏ । ମରଣକୁ କିଏ ବା ନଡରେ ?

ଯୁବକ ଦସ୍ତଖତ କରିଥିବା କାଗଜଟିକୁ ପକେଟ୍‌ରେ ରଖି ଏସ୍ ପି ସାହେବ ବାହାରକୁ ଆସିଲେ । ପୁଣି ପୂର୍ବପରି କବାଟକୁ

Digitized by srujanika@gmail.com

ବାହାରପଟ୍ଟ ଚାଲ ପକାଇ ଜିପ୍‌ରେ ଯାଇ ବସିଲେ । ଜିପ୍ ଛୁଟାଇ ଦେଲେ ତାଙ୍କ ଗନ୍ତବ୍ୟ ପଥରେ ।

ସ୍ବାଭିତରେ ଦୁଇଘଣ୍ଟା ଅତିବାହିତ ହୋଇ ଯାଇଛି । ପୁଣି ପୋଲିସ ଜିପ୍‌ଟି ଆସି ସେଇ କୋଠା ସାମନାରେ ଅଟକିଲା । ଏସ୍.ପି. ସାହେବ ଗୋଟାଏ ଖାତା ପତ୍ରର ଫାଇଲ୍ ଧରି ଚାଲି ଫିଟାଇ ଘର ଭିତରକୁ ପଶିଲେ । ଯୁବକଟି ସେହିପରି ଚେୟାର ଉପରେ ବସିଥାନ୍ତି । ଏସ୍.ପି. ସାହେବ ଖଣ୍ଡିଏ କାଗଜ ଯୁବକଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ଏ କାଗଜଟିରେ ଯାହା ସବୁ ଲେଖାହୋଇଛି, ସେହି ଅନୁଯାରେ ଅପଣଙ୍କୁ କାର୍ଯ୍ୟକରିବାକୁ ପଡ଼ିବ । ଯଦି ଆପଣ ମୋ ଅଦେଶକୁ ପ୍ରତ୍ୟାଖ୍ୟାନ କରି କିଛି ବ୍ୟତିକ୍ରମ ଘଟାଇବେ, ତେବେ ଅପଣଙ୍କ ଅବସ୍ଥା ସଙ୍କଟାପନ୍ନ ହେବ । କିନ୍ତୁ ଯଦି ମୋ ଆଦେଶ ଅନୁସାରେ କାର୍ଯ୍ୟ କରିପିବେ, ତେବେ ଆପଣଙ୍କ ସୁନାମ ଓ ସମ୍ମାନ ବଢ଼ିବ । ଆପଣଙ୍କ ପାଇଁ ଅନେକ କାମ ମୁଁ କରି ଆସିଛି । ଦେଶଦ୍ରୋହୀ ଶଣାଙ୍କରମଙ୍କୁ ଥାନାରେ ହାଜର କରାଇ ଦେଇଛି । ଏଣିକି ବାକିଥିବା କାମତକ ଅପଣଙ୍କର । ଅପଣଙ୍କୁ ଏତେସମୟ ଧରି ଏପରି ବନ୍ଦୀ ଅବସ୍ଥାରେ ରଖିବାର କାରଣ ହେଲା, ଆପଣଙ୍କ ପୋଷାକ ମୋର ଦରକାର ଥିଲା, ସେ କାମ ବର୍ତ୍ତମାନ ସରିଯାଇଛି । ନଅଶହ ଟିଣ ସୋରିଷ ତେଲ ଓ ପାଞ୍ଚଶହ କରାସିନ ଟିଣ ସିଜ୍ କରି ଥାନାରେ ରଖିଦେଇ ଆସିଛି । ଆପଣଙ୍କୁ ବିଶେଷ କିଛି କହିବାର ଦରକାର ନାହିଁ । ଏ ଫାଇଲ୍ ଭିତରେ ଗୋଟାଏ ଚିଠି ଅଛି, ସେଇଟା ପଢ଼ିଲେ ଆପଣ ସବୁ ବୁଝି ପାରିବେ । ବର୍ତ୍ତମାନ ମୁଁ ଆପଣଙ୍କ ଜିନିଷ ସବୁ ଯଥା ସ୍ଥାନରେ ରଖିଦେଇ ଯାଉଛି ।" ଏହା କହି

Digitized by srujanika@gmail.com

ଏସ୍. ପି. ପୋଷାକ ବଦଳାଇ ଧୋତି, ପଞ୍ଜାବି ପିନ୍ଧି କପ୍‌ଟିକୁ ଗ୍ୟାରେଜରେ ରଖି ଏସ୍. ପି. ସାହେବ ବସ୍ତାରେ ବୁଲି ବୁଲି ଯିବାକୁ ଲାଗିଲେ । ମୁହଁରେ ତାଙ୍କର ବିଜୟର ଦୀପ୍ତି ।

କିଛି ସମୟ ପରେ ଯୁବକ ଜଣକ ଫାଇଲଟିକୁ ଫିଟାଇ ଖଣ୍ଡିଏ ଚିଠି ବାହାର କରି ପଢିବାକୁ ଲାଗିଲେ । ଲେଖାଅଛି ।—

ପ୍ରିୟ ସୁଧୀର ବାବୁ

ନମସ୍କାର । ଆଜି ଆପଣଙ୍କୁ କିଛି ସମୟ ପାଇଁ କଷ୍ଟ-ଦେଇ ବନ୍ଦୀ କରି ରଖିଥିବାରୁ ମୁଁ ଦୁଃଖିତ । କିନ୍ତୁ ଜଣେ କର୍ମଚାରୀ, କର୍ତ୍ତବ୍ୟର ଆହ୍ୱାନରେ ଆପଣଙ୍କୁ ଏପରି ଭାବରେ ରଖିବାକୁ ମୁଁ ବାଧ୍ୟ ହେଲି । ସେଥିପାଇଁ ଯଦି ଆପଣ ଖରାପ ଭାବୁଥାନ୍ତି, ତେବେ କ୍ଷମା ଦେବେ ।

ଆପଣ ଜାଣିଥିବେ ବଜାରରେ କେତେଦିନ ହେଲା କିରାସିନି, ସୋରିଷ ତେଲ, ମୋଟେ ମିଳୁନାହିଁ । ଜନସାଧାରଣ ତେଲ ବିନା ନାନାପ୍ରକାର ଅସୁବିଧା ଭୋଗୁଛନ୍ତି । କିନ୍ତୁ ଦେଶର ଅବସ୍ଥା ବର୍ତ୍ତମାନ ସଙ୍କଟଜନକ ହୋଇଥିବାରୁ ଜନସାଧାରଣ ସବୁପ୍ରକାର ଅସୁବିଧାକୁ ସହ୍ୟ କରି ନିଜ କାମରେ ଆଗେଇ ଚାଲିଛନ୍ତି । କାରଣ ସୀମାନ୍ତରେ ଆମର ଯୁଦ୍ଧ ଲାଗି ରହିଛି । କିନ୍ତୁ ଦେଶର ଏଭଳି ପରିସ୍ଥିତିରେ କେତେଜଣ ମୁନାଫାଖୋର ବ୍ୟବସାୟୀ ଜନସାଧାରଣଙ୍କ ତଣ୍ଟିରେ ଛୁରୀ ଦବାକୁ ପଛାଉ ନାହାନ୍ତି । ସେହି ବ୍ୟବସାୟୀଙ୍କ ମଧ୍ୟରୁ ଆଜି ଶଶାଙ୍କ-

Digitized by srujanika@gmail.com

ବାବୁଙ୍କୁ ମୁଁ ଗିରଫ କରୁଛି । ସେ ତାଙ୍କ ଘରେ ନଅଶହ ଟିଣ ସୋରିଷତେଲ ଓ ପାଞ୍ଚଶହ ଟିଣ କିରୋସିନ ଲୁଚାଇ ରଖିଥିଲେ । ଆପଣ ସବୁ ଜାଣି ମଧ୍ୟ ତାଙ୍କୁ ଗିରଫ କରୁ ନଥିଲେ । ସେଥିପାଇଁ ମୁଁ ଆପଣଙ୍କ ପୋଷାକରେ ଆପଣଙ୍କ ଜିପ୍ ନେଇ ଗଲି । ସଶସ୍ତ୍ର ପୋଲିସ ନେଇ ଶଶାଙ୍କବାବୁଙ୍କ ଘର ଘେରାଉ କଲି । ସମସ୍ତ ସୋରିଷ-ତେଲ ଟିଣ ଓ କିରୋସିନ ଟିଣକୁ ସିଜ୍ କରି ମୁଁ ଥାନାରେ ରଖିଦେଇ ଆସିଛି । ଶଶାଙ୍କବାବୁଙ୍କୁ ଗିରଫ କରି ଥାନାରେ ରଖା ଯାଇଛି । ଫାଷ୍ଟଗୁର୍ଜ-ରିପୋର୍ଟ ମୁଁ ଦେଇ ଆସିଛି । ଏଣିକି ସମସ୍ତ କାମ ଆପଣଙ୍କର । ଆପଣ ଯଦି ନିଜ ନାମରେ ଖିଲାଫ କରିବେ, ତେବେ ନିଜେ ହଇରାଣ ହେବେ । ତାହା ଆଗରେ ମୁଁ ଏ ସମସ୍ତ କାର୍ଯ୍ୟ କରିଛି ବୋଲି କହିବେନି । ଆପଣ କହିଲେ ମୋର କିଛି କ୍ଷତି ହେବନି, କ୍ଷତି ହେବ ଆପଣଙ୍କର । ଶେଷରେ ଆପଣଙ୍କୁ ଏତିକି କହି ରଖୁଛି, ଟଙ୍କା ଲୋଭରେ ଆପଣ ସେପରି କିଛି ନ କରନ୍ତୁ । ଶଶାଙ୍କବାବୁଙ୍କୁ ଜାମିନ୍‌ରେ ଛାଡ଼ିବେନି । ଆପଣଙ୍କ ପାଖେ ପାଖେ ମୁଁ ରହିଛି । ଅଯଥାରେ ମୋ ଆଖିରେ ଧୂଳିଦବାକୁ ଚେଷ୍ଟା କରିବେନି । ଦରକାର ପଡ଼ିଲେ ଦେଖା କରିବି । ବର୍ତ୍ତମାନ ପାଇଁ ବିଦାୟ ନେଉଛି । ଇତି ।

ଆପଣଙ୍କର

ବନ୍ଧୁ,

ଅ ପ ରା ଧୀ

ଯୁବକ ଜଣକ ଏତେ ସମୟ ଧୈର୍ଯ୍ୟ ଧରି ଚିଠିଟି ପଢୁଥିଲେ । ଶେଷରେ ଅପରାଧୀ ନାଁ ଦେଖି ଚମକି ଉଠିଲେ ।

Digitized by srujanika@gmail.com

ଅପରାଧୀ ଏବ ଦୈବୀ ଶକ୍ତି ନ ହୋଇ କଣ ହୋଇପାରେ ! ସେ ସମସ୍ତଙ୍କ ଆଖି ଆଗରେ ସମସ୍ତ କାମ କରି ଚାଲି ଯାଉଛି, ଅଥଚ ତାକୁ କେହି ଧରି ପାରୁ ନାହାନ୍ତି । ତେବେ କଣ କରିବେ ସେ, ବର୍ତ୍ତମାନ ପରିସ୍ଥିତିରେ ତାଙ୍କ କର୍ତ୍ତବ୍ୟ କଣ ! ତାଙ୍କୁ କିଛି ବୁଦ୍ଧି ଦିଶୁନଥାଏ । ସେ ଦୁଇହାତରେ ମୁଣ୍ଡର ବାଳଗୁଡାକ ଟାଣୁଥାଆନ୍ତି । କିଛି ସମୟ ସେ ନୀରବରେ ଚିନ୍ତା କରିବା ପରେ ତାଙ୍କୁ ଗୋଟାଏ ବୁଦ୍ଧି ଦିଶିଲା । ସେ ନିଜ ଏସ୍. ପି. ପୋଷାକ ପିନ୍ଧି ଗ୍ୟାରେଜରୁ ଜିପ୍ ବାହାର କରି ଥାନା ଆଡ଼କୁ ଚାଲିଲେ । ମନ ତାଙ୍କର ଉଦ୍‌ବିଗ୍ନ ହୋଇ ଉଠୁଥାଏ ।

ଥାନାରେ ପହଞ୍ଚି ଦେଖିଲେ ସବୁ ଘଟଣା ସତ୍ୟ । ସେ ଆଜି ବିଶେଷ କିଛି ଚିନ୍ତା ନକରି ସମସ୍ତ ତେଲ ଟିଣ ତଦାରଖ କରିନେଲେ । ତା ପରେ ଶୋଙ୍କରମଙ୍କ ବିରୁଦ୍ଧରେ ହୋଇଥିବା ଚାର୍ଜ ରିପୋର୍ଟଟି ଭଲକରି ଦେଖି ଫେରି ଆସିଲେ । ବାକି ଆଜି ଯାହା କାମ ଥିଲା ସେ ସମସ୍ତ କାମ ସାରିଦେଇ ବସାକୁ ଫେରିଲେ ।

... ... ...

ରାତି ପ୍ରାୟ ଆଠଟା । ସୁଧୀର ବାବୁ ଘରର ଭିତରପଟ ବାରଣ୍ଡା ଆରାମ ଚେୟାରରେ ବସିଥାନ୍ତି । ମନରେ ତାଙ୍କର ଅସରନ୍ତି ଭାବନା । ଦ୍ୱିପ୍ରହରର ଘଟଣାଗୁଡାକ ତାଙ୍କୁ ମଧ୍ୟ ରାତିର ସ୍ୱପ୍ନପରି ଲାଗୁଥାଏ । କଣ ସବୁ ଘଟିଗଲା । ଅପରାଧୀର କାର୍ଯ୍ୟକୁ ସେ ଚିନ୍ତା କରି ବିଚଳିତ ହୋଇ ପଡ଼ୁଥାନ୍ତି । ଅପରାଧୀ ଯେ ଅଶରୀରୀ ପରି କାମ କରୁଛି । ଭୟରେ ତାଙ୍କର

Digitized by srujanika@gmail.com

ଲେମ ଟାକୁଶ ଉଠୁଥାଏ । ଠିକ୍ ଏହି ସମୟରେ ଦାଣ୍ଡ କବାଟରେ କରାଘାତ କରି କଏ ଡ଼ାକିଲା । ଦୁଇ, ତିନ ଥର ଡାକିବା ପରେ କବାଟ ଖୋଲିବେ କି ନାହିଁ ସୁଧୀର ବାବୁ ସ୍ଥିର ଠିକ୍ କରି ପାରୁ ନଥାନ୍ତି । ମନେ ମନେ ଭାବୁଥାନ୍ତି ପୁଣି କଣ ସେ ଅପରାଧୀ ଆସିଲା କି ? ତାପରେ ସୁଧୀର ବାବୁ, ସୁଧୀର ବାବୁ, ବୋଲି ଦୁଇ ତିନ ଥର ଡାକିବାର ଶୁଭିଲା । ଏଥର ସୁଧୀର ବାବୁ ନିଜ ମନକୁ ଦୃଢ଼ କରି କବାଟ ଖୋଲିଲାବେଳେ ତାଙ୍କ ମନ ଭୟରେ ଥରି ଉଠୁଥାଏ । ତଥାପି ଥରି ଥରି ହାତରେ କବାଟ ଖୋଲିଲେ ।

ଘର ଭିତରକୁ ପଶି ଆସିଲେ ଜଣେ ପ୍ରୌଢ଼ । ମୁହଁଟି ହସ ହସ । କହିଲେ, "ନମସ୍କାର, ସୁଧୀର ବାବୁ, ଆପଣ କଣ ମୋତେ ଚିହ୍ନି ପାରୁ ନାହାଁନ୍ତି କି ? ମୁଁ ଶିବ ଶୁଶୀଲ ମଜୁମଦାର, ରାତିଟାରେ ଅସି ଆପଣଙ୍କୁ ବ୍ୟସ୍ତ କରୁଛି କିଛି ଭାବିବେନି । ଗୋଟାଏ ଜରୁରୀ କାମ ଆପଣଙ୍କ ପାଖରେ ଅଛି ।"

ସୁଧୀର ବାବୁ ଅଳ୍ପ ହସି କହିଲେ, "ନମସ୍କାର ସୁଶୀଲ ବାବୁ ଭିତରକୁ ଆସନ୍ତୁ । ଏ ରାତିରେ ହଠାତ୍ ଏଠରେ ଚାଲି ଆସିଲେ ।"

ଭିତରକୁ ଯାଇ ଯାଇ, ସୁଶୀଲବାବୁ କହିଲେ, "ବହୁତ ଦିନ ହେଲା ଆସିବବୋଲି ଭାବୁଥିଲି, କିନ୍ତୁ କାମର ଚାପରେ ଆସି ପାରୁନଥିଲି ।" ଏତା କହି ସୁଶୀଲ ବାବୁ ଗୋଟିଏ ସୋଫା ଉପରେ ବସି ପଡ଼ିଲେ ।

Digitized by srujanika@gmail.com

ସୁଧୀର ବାବୁ ସୋଫା ଉପରେ ବସିପଡ଼ି କହିଲେ, "ହଁ, କୁହନ୍ତୁ, କି କାମ ମୋ ପାଖରେ ଅଛି ।"

"କାମଟା ବଡ଼ ଗୁରୁତର । ଏଇ ଆଜି ଆପଣ ଶଶାଙ୍କ ବାବୁଙ୍କୁ ଗିରଫ କରିଛନ୍ତି ? କିନ୍ତୁ ଶଶାଙ୍କବାବୁଙ୍କ ପରି ଏତେବଡ଼ ନାମଜାଦା ଲୋକକୁ ଆପଣ ଗିରଫ କରିବା ଠିକ୍ ହୋଇନି । ବ୍ରହ୍ମପୁର ସହରର ସେ ଜଣେ ବିଖ୍ୟାତ ଲୋକ । କାଲି ଯେତେବେଳେ ଖବରକାଗଜରେ ଶଶାଙ୍କବାବୁଙ୍କୁ ଗିରଫ କରିଥିବା କଥା ବାହାରି ପଡ଼ିବ, ଲୋକମାନଙ୍କ ଧାରଣା କଣ ହେବ କହିଲେ ? ସେ କଣ ବା ଏପରି ଦୋଷ କରିଛନ୍ତି ? ବଡ଼ ବ୍ୟବସାୟୀ ଜଣେ ସେ, ତେଲ କେତେ ଟିଣ ଲୁଚାଇ ରଖିଥିଲେ ବୋଲି ଆପଣ ତାଙ୍କୁ ଗିରଫ କରିପକାଇଲେ ! ମୁଁ ଯଦି ଟିକିଏ ଆଗରୁ ଏ କଥା ଜାଣିଥାନ୍ତି, ତାହାହେଲେ କଥାଟା କଣ ଏତେଦୂର ଅଗେଇ ଥାନ୍ତା । ହଉ ଯାହା ହବାର ହୋଇଗଲାଣି । ଆପଣ ଶଶାଙ୍କବାବୁଙ୍କୁ ଏଥର ଉଦ୍ଧାର କରନ୍ତୁ । ଆପଣ ଟିକିଏ ଚେଷ୍ଟା କଲେ ସେ ନିଶ୍ଚୟ ଉଦ୍ଧାର ପାଇବେ ।"

ଏ ସମସ୍ତ କଥା ଶୁଣି ସୁଧୀର ବାବୁ କହିଲେ, "ମୁଁ ଶଶାଙ୍କବାବୁଙ୍କ ନାମରେ ଚାର୍ଜ ରିପୋର୍ଟ ଦେଇ ଆସିଛି । ଏପରି ଅବସ୍ଥାରେ ମୁଁ ଆଉ କିଛି କରି ପାରିବିନି । ଆପଣଙ୍କ କାମରେ କିଛି ସାହାଯ୍ୟ କରି ପାରୁନଥିବାରୁ ଦୁଃଖିତ ।"

"ଆପଣ ତେବେ କହୁଛନ୍ତି ଯେ ଶଶାଙ୍କବାବୁଙ୍କ ସପକ୍ଷରେ କିଛି ପାରିବେନି । ହଉ ତେବେ ଆପଣଙ୍କ ଫୋନଟା ଟିକିଏ ମୁଁ ବ୍ୟବହାର କରିପାରେକି ?"

Digitized by srujanika@gmail.com

"ହଁ, ଫୋନ ବ୍ୟବହାର କରିବାକୁ ମୁଁ ମନା କରିବ ? ଆପଣ ଏକ କଥା କହୁଛନ୍ତି ? କାହାପାଖକୁ ଫୋନ କରିବେ କରନ୍ତୁ । ସେପାଖ ଘରେ ଫୋନ ଅଛି ।"

ସୁଶୀଲ ବାବୁ ଫୋନ୍ ରିସିଭର ଉଠାଇ ବେଲ୍ ଚିପିବାକୁ ଲାଗିଲେ । କିଛି ସମୟ ପରେ ଉତ୍ତର ଆସିଲା ।............

ମୁଁ ସୁଶୀଲ ମଜୁମ୍ଦାର କହୁଛି । ଏସ୍.ପି. ସାହେବ ମୋତେ ରାଜ ଦେଉଳାଙ୍କୁ । ମୁଁ ଜଣ କରିବ ।

ସେ ପାଖରୁ ଉତ୍ତର ଆସିଲା -----

"ଏହି ପାଖ ଘରେ ସେ ମହାଶୟ ବସିଛନ୍ତି ( ଏସ୍.ପି.-ସାହେବ ) । ମୁଁ ତାଙ୍କୁ ଡାକ ଦେଉଛି, ଆପଣ ତାଙ୍କୁ କୁହନ୍ତୁ । ଆପଣ ଅବା କହିଲେ ରାଜିହେବେ । ମୁଁ ତାଙ୍କୁ ଫୋନ୍ ଦେଉଛି, ଆପଣ ଫୋନ୍ ଧରିଥାନ୍ତୁ ।"

ସୁଶୀଳ ବାବୁ ଫୋନ୍ ଧରି ସୁଧୀର ବାବୁଙ୍କୁ ଡାକ କହିଲେ, "ଆପଣ ଫୋନ୍ ନଅନ୍ତୁ । ଆପଣଙ୍କୁ କିଏ ଡାକୁଛନ୍ତି ।"

ସୁଧୀର ବାବୁ ଫୋନ୍ ଧରି ପଚାରିଲେ 'ହ୍ୟାଲୋ' ?

× × ×

"ଆଜ୍ଞା ନମସ୍କାର, ଆପଣ ମତେ କଣ କହୁଛନ୍ତି ?"

× × ×

Digitized by srujanika@gmail.com

"ଆଜ୍ଞା ସେ କାମତ ସବୁ ସରିଯାଇଛି । ଅଗରୁ ଆପଣ କହିଥିଲେନ, ବର୍ତ୍ତମାନ ମୁଁ କେମିତି କଣ କରିବ ?"

× × ×

"ହଉ, ଆପଣ ଯଦି କହୁଛନ୍ତି ତେବେ ଚେଷ୍ଟା କରିବ ।"

× × ×

"ହଉ ଆଜ୍ଞା ନମସ୍କାର ।"

ସୁଧୀର ବାବୁ ଫୋନ୍ ରଖିଦେଇ ଫେରି ଆସିଲେ ସୋଫା ଉପରକୁ । ମୁଖ ମଣ୍ଡଳରେ ଘେରିଗଲା ଚିନ୍ତାର୍ତ୍ତତା । ମୁଣ୍ଡରେ ତାଙ୍କର ଉନ୍ନତଳଆ ବସ୍ତ୍ର ଚାମୁଡ଼ାଲା ପରି ଲଗିଲା । କଣ କରିବେ ସେ ? ଭଗବାନ କି ସଙ୍କଟରେ ତାଙ୍କୁ ପକାଇଲେ ।

ସୁଶୀଲ ବାବୁ ଅଳ୍ପ ହସି କହିଲେ, "ଆପଣ ଏତେ ଚିନ୍ତା କରୁଛନ୍ତି କାହିଁକି ? ଅପଣ ନଅଶହ ଟିଣ ସୋରିଷତେଲ ଓ ପାଞ୍ଚଶହ ଟିଣ କିରାସିନି ବୋଲି ଲେଖିଛନ୍ତି । କିନ୍ତୁ ଆପଣ ତ ପ୍ରତ୍ୟେକ ଟିଣ ଖୋଲି ଦେଖି ନାହାନ୍ତି । ତେଣୁ ଦଶଟା ସୋରିଷ ତେଲ ଓ ସାତ ଆଠ ଟିଣ କିରାସିନି ହୋଇପାରେ । ବାକି ଟିଣ ସବୁ ଅନ୍ୟ ତେଲ୍ ହୋଇଥାଇ ପାରେ ଏଥିପାଇଁ ଆପଣ ଏତେ ଚିନ୍ତା କରୁଛନ୍ତି କାହିଁକି ? ହଉ ଆପଣଙ୍କର ଅନେକ ସମୟ ନଷ୍ଟ କଲି । କଣ କରିବି, ସେଥିପାଇଁ କ୍ଷମା କରିବେ । ଆପଣ ଏଥର ବିଶ୍ରାମ କରନ୍ତୁ ମୁଁ ଯାଉଛି । ନମସ୍କାର ।"

Digitized by srujanika@gmail.com

ସୁଧୀର ବାବୁ ଶୁଖିଲା ମୁହଁରେ ହସ ଫୁଟାଇ ପ୍ରତି ନମସ୍କାର ଜଣାଇଲେ । ସୁଶୀଲ ବାବୁଙ୍କୁ ବିଦାୟ ଦେବାପାଇଁ ଦାଣ୍ଡ ବାରଣ୍ଡା ପର୍ଯ୍ୟନ୍ତ ଗଲେ । ସୁଶୀଲ ବାବୁ ଯିବା ପରେ କବାଟ ବନ୍ଦ କରି ଘର ଭିତରକୁ ଫେରି ଆସିଲେ । ମନ ତାଙ୍କର ମରି ଯାଇଛି । ସୋଫା ଉପରେ ଯାଇ ବସି ପଡ଼ିଛନ୍ତି, ତାଙ୍କର ନଜର ପଡ଼ିଲା ଟେବୁଲ ଉପରେ । ଅପରାଧୀ ପୁଣି କଣ ଛାଡ଼ି ଦେଇଛି ? ଏହା ଭାବି ତର୍ ତର୍ ରେ ଲଫାପାଟି ଖୋଲି ବସିଲେ । ଲଫାପାଟି ଖୋଲୁ ଖୋଲୁ ଖସି ପଡ଼ିଲା ଦଶଖଣ୍ଡ ଶହେ ଟଙ୍କିଆ ନୋଟ । ଏତେଗୁଡ଼ାଏ ଟଙ୍କା କୁଆଡୁ ଆସିଲା । ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ତା ପରେ ଭାବିଲେ ଯଦି ସୁଶୀଲ ବାବୁଙ୍କ ଟଙ୍କା ହୋଇଥିବ, ତେବେ ତ ସେ ନିଶ୍ଚୟ ଟଙ୍କା ନବା ପାଇଁ ଆସିବେ । ସୁଶୀଲ ବାବୁଙ୍କ ଛଡ଼ା ତ କେହି ଆସି ନାହାଁନ୍ତି । କିନ୍ତୁ ଟଙ୍କା ତ ତଳେ ପଡ଼ିନ । ବ୍ୟବସ୍ଥିତ ଭାବରେ ଟେବୁଲ୍ ଉପରେ ରଖାଯାଇଛି । ତେବେ ଏ ଟଙ୍କା କଣ ତାଙ୍କ ପାଇଁ ଥୋଇ ଦେଇଗଲେ ? ଏ ଟଙ୍କା ଦେବାର ଉଦ୍ଦେଶ୍ୟ ? ଋଣ ଶଶାଙ୍କବାବୁଙ୍କୁ ଉଦ୍ଧାର କରିବାକୁ ? କିଛି ଭାବିପାରିଲେନି, ମନ ତାଙ୍କର ଭାରାକ୍ରାନ୍ତ ହୋଇ ଉଠୁଥାଏ । ଉଠିଯାଇ ବିଛଣାରେ ଶୋଇବାକୁ ଚେଷ୍ଟା କଲେ । କିନ୍ତୁ ନିଦ ତ ନିଦ, ଆଖି ପତାବି ପଡ଼ିଲାନି । କଣ କରିବେ ସେ । ଗୋଟାଏ ପାଖରେ ଅପରାଧୀର ଆଦେଶ, ଆର ପାଖରେ ଉପରୁ ନିର୍ଦ୍ଦେଶ । କେଉଁ ରାସ୍ତା ସେ ବାଛିବେ । ମନରେ ଉଠୁଥାଏ ଝଡ଼ । ଆଜି ଦିନଟା କି ଦୁର୍ଦ୍ଦିନ । ରାତିଟା ଭଲରେ ପାହୁଛି କି ନାହିଁ ।

— — —

Digitized by srujanika@gmail.com

ମାଜିଷ୍ଟ୍ରେଟଙ୍କ ବାସ ଭବନ । ସକାଳ ସାତଟା ସମୟ । ଦିନ ପରେ ଦିନ ଗଡ଼ି ଗଲାଣି । ଶଶାଙ୍କ ରାମଙ୍କ ବିଚାରର ଆଜି ଶେଷ ତାରିଖ । ମାଜିଷ୍ଟ୍ରେଟ ଶିବପ୍ରସାଦ ମିଶ୍ର ନିଜ ଅଫିସ ରୁମ୍‌ରେ ବସିଛନ୍ତି । ମନରେ ତାଙ୍କର ଅସରନ୍ତି ଭାବନା । କଣ କରିବେ ସେ ଏ କେଶ୍‌ର ବିଚାର । ପ୍ରକୃତରେ ଦୋଷୀ କିଏ ? ଫାଇଲରୁ ସମସ୍ତ କାଗଜପତ୍ର ବାହାର କରି ଦେଖୁଥାନ୍ତି । ମନରେ ତାଙ୍କର ଦ୍ୱନ୍ଦ୍ୱ ଉଠୁଥାଏ । ଏସ୍. ପି ସୁଧୀର ବାବୁ ନଅଶହଟିଣ ସୋରିଷ ତେଲ ଓ ପାଞ୍ଚଶହ ଟିଣ ଜଗସିନ୍ ସିଜ୍ କରିଛନ୍ତି ବୋଲି ଖବର କାଗଜରେ ବାହାରି ଥିଲା । ସମସ୍ତେ ଜାଣିଲେ । କିନ୍ତୁ ଚାର୍ଜ ରିପୋର୍ଟରେ ଲେଖିଛନ୍ତି ଯେ ମୋଟ ଦଶ ଟିଣ ସୋରିଷ ତେଲ ଓ ସାତଟିଣ ଜଗସିନ ଜବତ କରିଛନ୍ତି । ବାକି ସବୁତକ ହ୍ୱାଇଟ୍ ଅଏଲ୍ ଟିଣ । ଏପରି ଗୋଟାଏ ଭୁଲ୍ କିପରି ହେଲା ?

ହଠାତ୍ ତାଙ୍କ ଭାବନାରେ ବାଧା ଦେଇ କଲିଙ୍ଗ୍ ବେଲ୍ ବାଜି ଉଠିଲା । ଶିବପ୍ରସାଦ ବାବୁ ଭିତରକୁ ଅସିବାକୁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶ ପାଇବା ସଙ୍ଗେ ସଙ୍ଗେ ପିଅନଟି ଗୋଟିଏ ଲଫାପା ଅଣି ଟେବୁଲ ଉପରେ ରଖିଦେଇ କହିଲା, "ଜଣେ ସାହେବ ଏ ଚିଠିଟା ଦେଇଗଲେ ଆପଣଙ୍କୁ ଦେଇଦବା ପାଇଁ ।" ଏତିକି କହି ପିଅନଟି ପରଦା ଆଡ଼େଇ ବାହାରକୁ ଚାଲିଗଲା ।

ଶିବ ପ୍ରସାଦ ବାବୁ ଲଫାପାଟି ଖୋଲି ଚିଠିଟି ପଢ଼ିବାକୁ ଲାଗିଲେ । ଚିଠିଟିରେ ଲେଖା ଅଛି—

Digitized by srujanika@gmail.com

ମାନନୀୟ ମହାଶୟ,

ନମସ୍କାର । ଚିଠିଟି ପଢ଼ି ଚମକି ଉଠିବେନି । ସତ୍ୟର ସନ୍ଧାନ ଦେବା ମୋର କର୍ତ୍ତବ୍ୟ । ଆପଣ ଚନ୍ଦ୍ରା ରାଜ୍ୟରେ ଘୂରି ବୁଲୁଥିବା ବେଳେ ମୋର ଏ ଚିଠି ଖଣ୍ଡିକ ବହୁତ ସାହାଯ୍ୟ କରିବ ବୋଲି ମୋର ଆଶା । ଏ ଦେଶଟାକୁ ଆମର ଏ ରକ୍ତ-ଶୋଷକ ଶାସକ ଦଳ ସର୍ବନାଶ କରିଦେଲେଣି । ଅନ୍ୟାୟ, ରିସ୍ୱତ, ଅତ୍ୟାଚାର ପ୍ରଭୃତିକୁ ପ୍ରଶ୍ରୟ ଦେଇ, ଦେଶର ପ୍ରତି ଅନ୍ଧ, କନ୍ଦରେ ଦୁର୍ନୀତି ପଶି ଗଲାଣି । ଏଇତ ଆମର ଶିକ୍ଷା, ସଭ୍ୟତା । ରାମ ରାଜ୍ୟ ବୋଲି ହୁରି ପଡ଼ୁଛି, କିନ୍ତୁ ରାବଣର ଶାସନ ଚାଲିଛି ।

ଅଜି ଆପଣଙ୍କ ପାଖକୁ ଯାହା ଲେଖୁଛି, ସେ ସବୁ ସତ୍ୟ ଘଟଣା । ଆପଣ ପରୀକ୍ଷା କରି ସବୁ ଜାଣି ପାରିବେ । ମୋର କାମ ହେଲା ମିଛ, ଅନ୍ୟାୟ, ଦୁର୍ନୀତିକୁ ମୂଳପୋଛ କରିବା । କିନ୍ତୁ ଶିବପ୍ରସାଦ ବାବୁ, ଗୋଟିଏ ଦୁର୍ନୀତିକୁ ତଡ଼ିଦବାକୁ ଇଚ୍ଛା କଲାବେଳେ ଆଉ ଗୋଟିଏ ଦୁର୍ନୀତି ଆସି ଦେଖା ଦେଉଛି । ପ୍ରକୃତ ସତ୍ୟ ଘଟଣାଗୁଡିକ ନକହିଲେ ଆପଣ କିଛି ବୁଝି ପାରିବେନି । ତେଣୁ ସମସ୍ତ ଘଟଣା ଆପଣଙ୍କୁ ଜଣାଉଛି ।

ଶଶାଙ୍କରାମଙ୍କ ପାଖରେ ନଅଶହ ଟିଣ ସୋରିଷ ତେଲ ଓ ପାଞ୍ଚଶହ ଟିଣ କିରସିନି ରହିଥିବା ଖବର ମୁଁ ବିଶ୍ୱସ୍ତ ସୂତ୍ରରୁ ଜାଣିଥିଲି । ଜାଣିବା ପରେ ଶଶାଙ୍କରାମଙ୍କ ପ୍ରତି ମୋ ମନ ବିଦ୍ରୋହ କରି ଉଠିଲା । ତେଲ ଟିଣ କପରି ସିଜ୍ କରି ଶଶାଙ୍କ-ରାମଙ୍କୁ ଗିରଫ କରିବି, ଚିନ୍ତା କରୁଥାଏ । ଚିନ୍ତା କଲେ ଉପାୟ ଆପେ ଆସି ଦେଖାଦିଏ ।

Digitized by srujanika@gmail.com

ଏସ୍.ପି.ସୁଧୀରବାବୁ ଯେତେବେଳେ ଦୁଇଦିନ ହେବ, ଏଠାକୁ ବଦଳି ହୋଇ ଆସିଥାନ୍ତି । ତେଣୁ ତାଙ୍କୁ ବିଶେଷ କେହି ଚିହ୍ନି ନ ଥାନ୍ତି । ସେ ତାଙ୍କ ଜିପ୍‌ରେ ଯାଉଥିବା ବେଳେ ରାସ୍ତାରେ ଜିପ୍ ଅଟକାଇଲି । ତା ପରେ ତାଙ୍କୁ ମରଣର ଭୟ ଦେଖାଇ ମୋ ଘରର ରୁଡ଼ ଦେଇ ଆସିଲି । ତାଙ୍କୁ ଏପରି ଭାବରେ ମୁଁ ବାନ୍ଧି କରିଥିଲି ଯେ ତାଙ୍କର ମୋ ଉପରେ ଆକ୍ରମଣ କରିବାକୁ ଶକ୍ତି ନ ଥିଲା । ସୁଧୀର ବାବୁଙ୍କ ଏସ୍.ପି. ପୋଷାକ ପିନ୍ଧି ତାଙ୍କ ଜିପ୍ ନେଇ ଶଶାଙ୍କବାବୁଙ୍କ ଘରକୁ ଆସିଲି । ସୁଧୀର ବାବୁଙ୍କୁ ଅଚଳ ଅବସ୍ଥାରେ ଘରେ ପକାଇ ବାହାରୁ ତାଲା ଲଗାଇ ଦେଲି । ସୁ। ପୂର୍ବରୁ ଥାନାକୁ ଫୋନ କରି ପୋଲିସ ଫୋର୍ସକୁ ନେଇ ଶଶାଙ୍କ-ବାବୁଙ୍କ ଘର ଘେରାଉ କରିଥାଏ । ତା ପରେ ଶଶାଙ୍କବାବୁଙ୍କ ଘରୁ ମୁଁ ନଅ ଶହ ତିଶି ସୋରିଷ ତେଲ ଓ ପାଞ୍ଚଶହ ତିରିଶି କଟ୍ରସିନ ସିଜ୍ କଲି । ଶଶାଙ୍କବାବୁଙ୍କୁ ଗିରଫ କରି ଥାନାରେ ଅଟକ କଲି । ସୁଧୀରବାବୁଙ୍କ ଠାରୁ ଖାଲି କାଗଜରେ ଦସ୍ତଖତ ଆଣି ଥାନାରେ ପ୍ରଥମ ସୂଚନା ରିପୋର୍ଟ ଦେଲି । ସେ ପ୍ରଥମ ସୂଚନା ରିପୋର୍ଟ ମୁଁ ନିଜେ ଲେଖିଲି, କିନ୍ତୁ ତଳେ ଏସ୍.ପି ସୁଧୀର ଦାଶଙ୍କ ଦସ୍ତଖତ ଥିଲା । ଏ ସମସ୍ତ କାମ ସାରିବା ପରେ ସୁଧୀରବାବୁଙ୍କୁ ମୁକ୍ତ କରି, ତାଙ୍କୁ ସମସ୍ତ ବିଷୟ ଜଣାଇ ମୋ ପରିଚୟ ଦେଲି । ତାଙ୍କୁ ବାରମ୍ବାର ସତର୍କ କରି ଦେଇଥିଲି ଯେ, ସେ ଯେପରି ସତ୍ୟକୁ ଲୁଚାଇଦେବାକୁ ଚେଷ୍ଟା ନ କରନ୍ତି । କିନ୍ତୁ ମୋ କଥା ମୋ ପାଖରେ ରହିଲା । ସେ ସବୁ ଜାଣି ଶୁଣି ସତ୍ୟର ଅପଳାପ କଲେ ।

Digitized by srujanika@gmail.com

। ୯ ।

ସୁଧୀର ବାବୁଙ୍କ ଘରକୁ ସେଦିନ ରାତି ଆଠଟା ସମୟରେ ସୁଶୀଲ ମଜୁମଦାର ବୋଲି ଜଣେ ଭଦ୍ରଲୋକ ଯାଇଥିଲେ । ସୁଶୀଲ ବାବୁ ଶଶାଙ୍କଶେଖରଙ୍କୁ ସେହିଦିନ ରାତିରେ ଜାମିନ୍‌ରେ ଛାଡ଼ିବା ପାଇଁ ସୁଧୀର ବାବୁଙ୍କୁ ଅନୁରୋଧ କରିଥିଲେ । ଆଜି ମଧ୍ୟ କହିଲେ ଯେ ଶଶାଙ୍କଶେଖରଙ୍କ ପରି ନାମଜାଦା ଲୋକଙ୍କୁ ଗିରଫ କରି କିଛି ଭଲ କାମ କରି ନାହାନ୍ତି । କିନ୍ତୁ ଶଶାଙ୍କ-ଶେଖରଙ୍କୁ ଉଦ୍ଧାର କରିବା ପାଇଁ ସୁଧୀର ବାବୁ ରାଜି ହେଲେନି । କାରଣ ମୋତେ ତାଙ୍କର ଡର ଥାଏ । ସୁଶୀଲ ବାବୁଙ୍କ କଥାରେ ସୁଧୀର ବାବୁ ରାଜି ନ ହେବାରୁ ଆଉ ଜଣେ କେହି ଫୋନରେ ଅନୁରୋଧ କଲେ । ସୁଧୀର ବାବୁ ସୁଶୀଲ ବାବୁଙ୍କ ଅନୁରୋଧକୁ ଯିବା ଏଡ଼ାଇ ଦେଉଥିଲେ, କିନ୍ତୁ ଫୋନର ଅନୁରୋଧ ଏଡ଼ାଇ ପାରିଲେନି । ତାପରେ ସୁଧୀର ବାବୁଙ୍କୁ କିଛି ଟଙ୍କା ଉତକୋଚ୍ ଦିଆଯାଇଛି । ଏ ସମସ୍ତ ଖବର ସତ୍ୟ । ଅପରାଧୀ ମିଥ୍ୟା କହି ଜାଣେନି । ଯଦି ପାରନ୍ତି, ଆପଣ ପ୍ରମାଣିତ କରିବେ । ଏସ୍. ପି. ସାହେବଙ୍କ ପ୍ରଥମ ରୁଜୁ ରିପୋର୍ଟର ଫଟୋଷ୍ଟାର୍ଟ କପି ପଠାଇଲି । ଏ ଦସ୍ତଖତ ଏସ୍. ପି. ସାହେବଙ୍କର କି ନୁହେଁ, ପରୀକ୍ଷା କରି ଦେଖିବେ । ଆଉ ବିଶେଷ କିଛି ଲେଖିବାର ନାହିଁ । ସମସ୍ତ ସତ୍ୟ କଥା ଜଣାଇଲି । ବିଚାରପତି ଆପଣ । ସତ୍ୟ, ନ୍ୟାୟର ବିଚାର କରିବେ । ଜନ ସାଧାରଣଙ୍କର ସେବା ମୋ ଜୀବନର ବ୍ରତ । କଳାବଜାରୀ, ଚୋର, ଦେଶ ଦ୍ରୋହୀ ପ୍ରଭୃତି ସମସ୍ତଙ୍କ ଆଖି ଆଗରୁ ଖସି ଯାଇ ପାରନ୍ତି, କିନ୍ତୁ ମୋ ଆଖିରେ ଧୂଳିଦେଇ ଖସି ଯାଇ ପାରିବେନି । ଆଜି ଶଶାଙ୍କଶେଖରଙ୍କ ବିଚାରର ଶେଷ-ଦିନ । ଆପଣ କିପରି ବିଚାର କରିବେ, ତାହାରି ଅପେକ୍ଷାରେ

Digitized by srujanika@gmail.com

ରହିଲି । ଦରକାର ହେଲେ ଆପଣଙ୍କୁ ସାକ୍ଷାତ କରିବ । ବିଦାୟ ନେଉଛି । ନମସ୍ତେ । ଇତି ।

ଆପଣଙ୍କର
ସାହାଯ୍ୟକାଂକ୍ଷୀ
ଅପରାଧୀ

ଶିବପ୍ରସାଦ ବାବୁ ଚିଠିଟି ପଢ଼ିସାରି ମନକୁ ମନ କହି ଉଠିଲେ—ଧନ୍ୟ ସେ ଅପରାଧୀ ! ସମସ୍ତଙ୍କ ଆଖି ଆଗରେ ଭେଲିକି ଲଗାଇ ଚାଲି ଯାଉଛି । କେହି ଅପରାଧୀକୁ ଚିହ୍ନି ପାରୁ ନାହାନ୍ତି, କିନ୍ତୁ ତା ଆଖି ଆଗରୁ କେହି ବାଦ୍ ପଡ଼ୁ-ନାହାନ୍ତି । ନିଜ ଫାଇଲ ଭିତରେ ଥିବା ଏସ୍. ପି. ସାହେବଙ୍କ ଚାର୍ଜ ରିପୋର୍ଟଟିକୁ କାଢ଼ି ଅପରାଧୀ ଦେଇଥିବା ଫଟୋଷ୍ଟାର୍ଟ କପି ସାଙ୍ଗରେ ମିଳାଇ ଦେଖିଲେ ଯେ ଦୁଇଟିଯାକ ଦସ୍ତଖତ ଏସ୍. ପି. ସାହେବ ସୁଧୀର ଦାଶଙ୍କର । ଏ ଦୁଇଟିଯାକ ଦସ୍ତଖତ ପୁରା ପୁରି ଏକା, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଅପରାଧୀର ଚିଠି ଓ ଫଟୋଷ୍ଟାର୍ଟ କପିଟିକୁ ଶଶାଙ୍କରମଙ୍କ କେଶ୍ର ଫାଇଲ ଭିତରେ ସଜାଡ଼ି ରଖିଲେ । ଘଣ୍ଟାକୁ ଚାହିଁ ଦେଖିଲେ ଆଠଟା ବାଜି ତିରିଶମିନିଟ୍ ହୋଇ ଗଲାଣି । ନିଜର ନିତ୍ୟକର୍ମ ସାରିବାକୁ ପଡ଼ିବ । ଦେଖାଯାଉ, ସତ୍ୟ, ନ୍ୟାୟ, ଧର୍ମର ଜୟ ହଉଛି କି ନାହିଁ । ନିଜର ନିତ୍ୟକର୍ମ ସବୁ ପୁଣି ସାରିବାକୁ ପଡ଼ିବ । ଚେୟାର ଛାଡ଼ି ଉଠି ଭିତରକୁ ଗଲେ ଶିବପ୍ରସାଦ ବାବୁ । ଘଣ୍ଟାରେ ଠନ୍ ଠନ୍ ହୋଇ ବାଜିଲା ନଅଟା ।

ବ୍ରହ୍ମପୁରର କୋର୍ଟରେ ସବୁଦିନ ଅପେକ୍ଷା ଆଜି ଜନ-ସମାଗମ ବଢ଼ି ଯାଇଛି । ଶଶାଙ୍କରମଙ୍କ କେଶ୍ ବିଚାରର ଥିଳ

Digitized by srujanika@gmail.com

ଶେଷ ଦିନ । ସମସ୍ତେ ଗୁହାଁରିଛନ୍ତି ବିଚାରର ରାୟ ଶୁଣିବା ପାଇଁ ।

ଘଣ୍ଟାରେ ବାରଟା ବାଜିଲା । ଏସ୍.ପି. ସାହେବ, ଶଶାଙ୍କ-ରାମ, ବିଚାର ପତି ସମସ୍ତେ ଉପସ୍ଥିତ ।। ବିଚାର ଆରମ୍ଭ ହେଲା । ବିଚାରପତି ନିଜ ଫାଇଲରୁ ଗୋଟିଏ ଚିଠି କାଢ଼ିଲେ । ସେଇଟି ହେଲା ଅପରାଧୀ ଠାରୁ ପାଇଥିବା ଫଟୋଷ୍ଟାଟ କପି, ଗୁର୍ଜ-ରିପୋର୍ଟ । ଫଟୋଷ୍ଟାଟ ଗୁର୍ଜ ରିପୋର୍ଟରେ ଥିବା ଏସ୍. ପି.ଙ୍କ ଦସ୍ତଖତ ଏସ୍. ପି. ସାହେବଙ୍କୁ ଦେଖାଇ ପଚାରିଲେ, "ଏ ଦସ୍ତଖତ ଆପଣ କରିଛନ୍ତି ?"

ଏସ୍. ପି. ସାହେବ ଗୁର୍ଜ ରିପୋର୍ଟଟି ଦେଖି ଚମକି ଉଠିଲେ । ଇତସ୍ତତ ହୋଇଯାଇ ଥର ଥର କଣ୍ଠରେ କହିଲେ— ହଁ, ତାହା ମୋ ଦସ୍ତଖତ । ମାଜିଷ୍ଟ୍ରେଟ ସାହେବ ଦ୍ୱିତୀୟ ଗୁର୍ଜ ରିପୋର୍ଟଟିକୁ ଦେଖାଇ ପଚାରିଲେ, "ଏ ରିପୋର୍ଟ ମଧ୍ୟ ଆପଣ ଦେଇଛନ୍ତି ?'

" ହଁ "

ତେବେ ପ୍ରଥମ ଗୁର୍ଜ ରିପୋର୍ଟ ଆପଣ କଣ କଲେ ?

ଏସ୍. ପି. ସାହେବ କିଛି ଉତ୍ତର ଦେଲେନି ।

"ଆପଣଙ୍କ ପ୍ରଥମ ଗୁର୍ଜ ରିପୋର୍ଟ ଦେଲାବେଳେ ଯେଉଁ-ମାନେ ସାକ୍ଷୀ ଥିଲେ, ସେମାନେ କୁଆଡ଼େ ଗଲେ ? ଆପଣ ପ୍ରଥମ ରିପୋର୍ଟରେ ଲେଖିଛନ୍ତି ଯେ ନଅଶହ ତିରି ସୋରିଷ-

Digitized by srujanika@gmail.com

ତେଲ,ପାଞ୍ଚଶହ ଟିଣ କିରାସିନ ଜବତ କଲେ । ସେଇସବୁ ମଧ୍ୟ ଖବର କାଗଜରେ ବାହାରିଥିଲା । ଆପଣ ଏ ରିପୋର୍ଟ ନ ଦେଇ ଆଜି ଗୋଟିଏ ରିପୋର୍ଟ ଦେଇଛନ୍ତି । ସେଥିରେ ଲେଖିଛନ୍ତି ଦଶ ଟିଣ ସୋରିଷ ତେଲ ଓ ସାତଟିଣ କିରାସିନ, ବାକି ସବୁ ହ୍ୱାଇଟ୍ ଅଏଲ ଟିଣ । ଏ ସମସ୍ତ ଘଟଣା କଣ କୁହନ୍ତୁ ।”

ବିଚାରପତିଙ୍କ ଠାରୁ ଏ ସମସ୍ତ ବିଷୟ ଶୁଣି ଏସ୍. ପି.ଙ୍କର ମୁହଁ ଉପରେ କଳା ପଡ଼ିଗଲାଣି । ଆଖି ଆଗରେ ତାଙ୍କର ନାଚି ଯାଉଛି ଅପରାଧୀର ପ୍ରତିଛବି । ସେ ଅପରାଧୀର ଉପରେ ଘଟିଯାଇଥିବା ସମସ୍ତ ସତ୍ୟ ଘଟଣା ବିଚାରପତିଙ୍କ ସମ୍ମୁଖରେ କହିଗଲେ । ଅପରାଧୀ ତାଙ୍କୁ କିପରି ବନ୍ଦୀ କରି ରଖିଥିଲା ଓ ସୁଶୀଲ ବାବୁ କିପରି ଟଙ୍କା ଟେବୁଲ ଉପରେ ରଖିଦେଇ ଗଲେ, ସମସ୍ତ ଘଟଣା କହିଗଲେ । ସେ ଅପରାଧୀର ଉପରେ ସତ-କଥା ଗୁଡ଼ାକ ବର୍ଣ୍ଣନା କରିଗଲେ ।

କୋର୍ଟରେ ସମସ୍ତେ ନୀରବରେ ଏସ୍. ପି. ସାହେବଙ୍କ ବର୍ଣ୍ଣନା ଶୁଣୁଥାନ୍ତି । ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ । ଶେଷରେ ଅପରାଧୀର ଉପରେ ଜଣେ ପୋଲିସ ଅଫିସର ମିଛ କହିବାକୁ ଉଠିଲେ । ଯାହାହେଉ ଅପରାଧୀ ଲାଗି ଶଶାଙ୍କରାମଙ୍କ ପ୍ରକୃତରୂପ ଆଜି ବାହାରେ ଧରାପଡ଼ୁଛି ।

ମାଜିଷ୍ଟ୍ରେଟ ସାହେବ ଏସ୍. ପି. ସାହେବଙ୍କ ଠାରୁ ସମସ୍ତ କଥା ଶୁଣିବା ପରେ, ଏସ୍. ପି. ସାହେବଙ୍କ ବିଚାର ମୁଲତବୀ ରଖିଲେ । ଶଶାଙ୍କରାମଙ୍କୁ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ଶଶାଙ୍କରାମଙ୍କ ମୁହଁ ଲାଜରେ ତଳକୁ ନଇଁଗଲା । ମାଜିଷ୍ଟ୍ରେଟ

Digitized by srujanika@gmail.com

ସାହେବ ଏସ୍. ପି. ସାହେବଙ୍କ ବକ୍ତୃର ଖଣ୍ଡିତ କରି ଶଶାଙ୍କ-ଚାମଙ୍କ ବକ୍ତୃର ଶେଷ କଲେ ।

ସାମ୍ବାଦିକମାନେ ହସ ହସ ମୁହଁରେ ସମସ୍ତ ଘଟଣା ଲେଖି ବାହାରକୁ ଆସିଲେ । କୋର୍ଟର ଗହଳ କମିବାକୁ ଲାଗିଲା ।

ସବୁରି ମୁହଁରେ ଗୋଟିଏ କଥା—ଧର୍ମର ଜୟ ହେଲା ।

ଚିଫ୍ ଇଂଜିନିୟରଙ୍କ କ୍ୱାଟର । ଘରର ସାମନାରେ ଡ୍ରଇଁ ରୁମ୍ । ଡ୍ରଇଁ ରୁମ୍‌କୁ ଲାଗି ଅଫିସ ରୁମ୍ । ଅଫିସ ରୁମ୍‌ରେ ଗୋଟିଏ ବଡ଼ ଟେବୁଲ । ଟେବୁଲ ପାଖକୁ ଲାଗି ଦୁଇଟି କାଚ ଆଲମିରା । ବଡ଼ ଟେବୁଲଟି ପାଖରେ ଗୋଟାଏ ସୁନ୍ଦର ଗଦି ଚେୟାରରେ ବସିଛନ୍ତି ଇଞ୍ଜିନିୟର ସାହେବ । ପାଖରେ ଅନ୍ୟ କେହି ଲୋକ ନାହାଁନ୍ତି । ଇଂଜିନିୟର ସାହେବ ବସି ଗୋଟିଏ ପତ୍ରିକା ପଢ଼ୁଛନ୍ତି । ମୁହଁରେ ତାଙ୍କର ଚୁରୁଟ ଲାଗି ରହିଛି । ସକାଳ ନଅଟା ବାଜିବ । ତଥାପି ତାଙ୍କର ନିତ୍ୟକର୍ମ ସରିନି । କେଉଁ ଆଡ଼କୁ ନଜର ନାହିଁ । ମନଟା ଲାଗିରହିଛି ପତ୍ରିକାର ଗୋଟିଏ ଗଳ୍ପ ଭିତରେ ।

ଦ୍ୱାର ମୁହଁରେ ଅସି ପିଅନ ବେଲ୍ ଟିପିଲା । ଇଂଜିନିୟର ସାହେବ ଘର ଭିତରକୁ ଆସିବାକୁ ଅର୍ଡ଼ର ଦେଲେ । ପିଅନଟି ଆସି ବଢ଼ାଇଦେଲା ଖଣ୍ଡିଏ ସ୍ଲିପ୍ କାଗଜ । କେହି ଜଣେ ଭଦ୍ରଲୋକ ଗେଟ୍ ପାଖରେ ଅପେକ୍ଷା କରି ଲେଖି ପଠାଇଛନ୍ତି ଇଂଜିନିୟର ସାହେବଙ୍କ ସହିତ ଦେଖା କରିବାକୁ । ଇଂଜିନିୟର ସାହେବ କାଗଜଟିକୁ ପିଅନଟିକୁ ଫେରାଇ ଦେଇ ଭଦ୍ରଲୋକଙ୍କୁ

Digitized by srujanika@gmail.com

ଆସି ଦେଖା କରିବାକୁ କହିଲେ । ପିଅନଟି କାଗଜଟି ନେଇ ବାହାରକୁ ଚାଲିଗଲା ।

କିଛିସମୟ ପରେ ଅଫିସ ରୁମ୍‌କୁ ପଶିଆସିଲେ ଜଣେ ଯୁବକ । ମୁହଁଟି ହସ ହସ । ପିନ୍ଧିଛନ୍ତି ଦାମିକା ସୁଟ୍ । ହସି ହସି କହିଲେ "ନମସ୍କାର" ।

ଇଂଜିନିୟର ସାହେବ ପ୍ରତିନମସ୍କାର ଜଣାଇ କହିଲେ, "ବସନ୍ତୁ, ଆପଣଙ୍କର ମୋ ପାଖରେ କଣ କାମ ଅଛି ?"

"ହଁ ଆପଣଙ୍କ ପାଖରେ ମୋର ଗୋଟାଏ ଜରୁରୀ କାମ ଅଛି । କିନ୍ତୁ ଏମିତି କାମ ଯେ ଆପଣ ତାହା କେବେ କଳ୍ପନା ବି କରିନଥିବେ ।"

"ଆପଣ ଏପରି ଅଭିନୟ କରି ଯାଉଛନ୍ତି କାହିଁକି ? ଆପଣ କଣ ଜଣେ ଅଭିନେତାକି ? ଯାହା କାମ ଅଛି ଶୀଘ୍ର କୁହନ୍ତୁ । ମୁଁ ବଡ଼ କାର୍ଯ୍ୟ ବ୍ୟସ୍ତ । ଅଭିନୟ ଦେଖିବାକୁ ମୋର ସମୟ ନାହିଁ ।"

"ଆପଣତ ସବୁବେଳେ କର୍ମବ୍ୟସ୍ତ । କାରଣ ଆପଣ ଜଣେ ସଚ୍ଚୋଟ୍ କର୍ମଚାରୀ । ଅଯଥାରେ ସମୟ ନଷ୍ଟ କରିବା ଆପଣଙ୍କ ପକ୍ଷରେ ସମ୍ଭବ ନୁହେଁ, ଆଜ ମୋ ଅଭିନୟ ଦେଖିବେ ବା କିପରି ? କିନ୍ତୁ ମୁଁ ଭାବୁଛି, ଆପଣ ଯଦି ଅଭିନୟ କରନ୍ତେ, ତେବେ ଜଣେ ଖୁବ୍ ସୁନାମଧନ୍ୟ ଅଭିନେତା ହୁଅନ୍ତେ ।"

Digitized by srujanika@gmail.com

ଇଂଜିନିୟର ସାହେବ ରାଗିଯାଇ କହିଲେ, "ବଡ଼ ଆଶ୍ଚର୍ଯ୍ୟ ଲୋକତ ଆପଣ ? ଆପଣଙ୍କର କଣ କାମ ଅଛି, କିଛି ନକହି ଏଠାରେ ଅଭିନୟ ବିଷୟରେ ଲେକ୍ଚର ଦେବା ଆରମ୍ଭ କରି-ଦେଲେଣି । ଏଟା ରଙ୍ଗମଞ୍ଚ ନୁହେଁ ଯେ ମୁଁ ଆପଣଙ୍କର ଅଭିନୟ ଦେଖିବି । ଶୀଘ୍ର କୁହନ୍ତୁ, କି କାମରେ ଏଠାକୁ ଆସିଛନ୍ତି ?"

"ଇଞ୍ଜିନିୟର ସାହେବ, ଆପଣତ ବଡ଼ ବଦରାଗି ଲୋକ । ଏମିତି ଟିକିଏ ଟିକିଏ କଥାରେ ଚିଡ଼ି ଉଠୁଛନ୍ତି କାହିଁକି ? କଣ ତଳ ଅଫିସରଙ୍କ ଉପରେ ଚିଡ଼ି ଚିଡ଼ି ଆପଣଙ୍କର ସମସ୍ତଙ୍କ ଉପରେ ଚିଡ଼ିବା ଅଭ୍ୟାସ ହୋଇଗଲାଣି କି ?"

"ଆପଣଙ୍କୁ ଏଠାକୁ ସମାଲୋଚନା କରିବାକୁ କେହି ଡାକିନି । ଯଦି ଆପଣଙ୍କର କିଛି କାମ ନାହିଁ ଦୟାକରି ଏଠାରୁ ଚାଲିଯାଇ ପାରନ୍ତି ।"

"କାମ ନାହିଁ, ଭାବୁଛନ୍ତି କଣ ମୁଁ ଆପଣଙ୍କ ସାଙ୍ଗରେ ଖୁସି ଗପ କରିବାକୁ ଆସିଛି ? ମୁଁ ଆପଣଙ୍କର ତଳ ଅଫିସର ନୁହେଁ ଯେ ଆପଣଙ୍କ ଆଦେଶ ମାନି ଚାଲିଯିବି । ମୋର କାମ ହେଉଛି, ମୁଁ ଯାହା ପ୍ରଶ୍ନ କରିବି ତାହାର ଉତ୍ତର ଆପଣ ଦେବେ । ଆପଣଙ୍କ ସମୟର ମୂଲ୍ୟ ଅପେକ୍ଷା ମୋ ପକ୍ଷରେ ସମୟର ମୂଲ୍ୟ ବହୁତ ବେଶୀ । ଶୀଘ୍ର ଶୀଘ୍ର ପାଟି ଛୁଣ୍ଡି ନକରି ମୋ ପ୍ରଶ୍ନର ଉତ୍ତରଗୁଡ଼ିକ ଦେଇ ଦିଅନ୍ତୁ । ମୋର ଉତ୍ତରଗୁଡ଼ିକ ଶୀଘ୍ର ଦେଇଦେଲେ ମୁଁ ଚାଲିଯିବି । ମୋର ପ୍ରଥମ ପ୍ରଶ୍ନ ଶୁଣନ୍ତୁ ।

Digitized by srujanika@gmail.com

"ଆପଣଙ୍କ ଡ଼ିପାର୍ଟମେଣ୍ଟର ଓଭରସିଅର ସନାତନ ମିଶ୍ରଙ୍କ ମୃତ୍ୟୁ ପାଇଁ ଦାୟୀ କିଏ ? ଆପଣ ନା ?" ସାହେବ ଚମକି ଉଠିଲେ ।
"ସନାତନ ମିଶ୍ର ତ ଆତ୍ମହତ୍ୟା କରିଛି, ତା ମୃତ୍ୟୁପାଇଁ ମୁଁ କାହିଁକି ଦାୟୀ ହେବି ? ଆପଣ ଏପରି ପ୍ରଶ୍ନ କାହିଁକି ପଚାରୁଛନ୍ତି ?"

"ଏ ପ୍ରଶ୍ନ କାହିଁକି ପଚାରୁଛି ପରେ ଜାଣିବେ । ସନାତନ ବାବୁ ଆତ୍ମହତ୍ୟା କରିଛନ୍ତି ସତ । କିନ୍ତୁ ଆପଣଙ୍କ ଯୋଗୁହିଁ ସେ ଆତ୍ମହତ୍ୟା କରିବାକୁ ବାଧ୍ୟ ହେଲେ । ଆପଣ ତାଙ୍କ ନାମରେ ମିଛ ରିପୋର୍ଟ ଲେଖି ତାଙ୍କୁ ଚାକିରିରୁ ସସ୍‌ପେଣ୍ଡ କରାଇଲେ । ଆପଣ କଣ୍ଟ୍ରାକ୍ଟର ଠାରୁ ଟଙ୍କା ନେଇ କଣ୍ଟ୍ରାକ୍ଟରକୁ କହି ତାଙ୍କ ନାଁରେ ଉତ୍କୋଚ ନେବାର ପ୍ରମାଣ କଲେ । ସତ୍ୟ ଧର୍ମରେ ସନାତନ ବାବୁ ରହିବାରୁ ଆପଣଙ୍କର ଅସୁବିଧା ହେଲା । ଜାଣି ଶୁଣି ଆପଣ ତାଙ୍କୁ ବହୁତ ହଇରାଣ କଲେ । ଆପଣ ହଇରାଣ କରି ମଧ୍ୟ ତାଙ୍କୁ ପାରିଲେନି । ଶେଷରେ ମିଠା କଥା କହି ତାଙ୍କ ମନ ଭୁଲାଇ ରିଟ୍ ଉଠାଇ ଆଣିବାକୁ କହିଲେ । ସରଳ ସନାତନ ବାବୁ ଆପଣଙ୍କ କପଟ ବୁଝି ପାରିଲେନି । ତାଙ୍କ ମନଥିଲା ଦେବାଳୟ ପରି ପବିତ୍ର । ଆପଣ ତାଙ୍କ ସହିତ ବିଶ୍ୱାସଘାତକତା କରି ଶେଷରେ ତାଙ୍କୁ ଚାକିରିରୁ ବରଖାସ୍ତ କଲେ । ଆପଣଂକ ଲାଗି ତାଂକ ପରିବାରରେ ଝଡ଼ ବହିଗଲା । ସେହି କଷ୍ଟ ସହି ନପାରି ସନାତନ ବାବୁ ଆତ୍ମହତ୍ୟା କଲେ । ସନାତନ ବାବୁଂକ ମୃତ୍ୟୁ ପରେ ମଧ୍ୟ ଆପଣଂକ ମନ ତରଳିଲାନି । ଆପଣ ଜୀବନରେ ଯେତେ ପାପ କଲେଣି, ବେଳ ଆସିବ, ସେଥିପାଇଁ ଆପଣ ଅନୁତାପ କରିବେ । ସେ ଗଲା

Digitized by srujanika@gmail.com

କଥା ଆପଣଙ୍କୁ ମନେ ପକାଇ କହି ଲାଭ ନାହିଁ । ଆପଣ, ମୋତେ, ୧୦୦୦୦ ଟଙ୍କାର ଗୋଟିଏ ଚେକ୍ ଲେଖି ଦିଅନ୍ତୁ । ଚେକ୍‌ଟି ଆପଣ ନିଜ ନାଁରେ ଲେଖିଦିଅନ୍ତୁ । ମୁଁ ସେ ଟଙ୍କା ଡ୍ର କରି ନେଇଯିବି । ଏ ଟଙ୍କା ନେଇ ମୁଁ ସନାତନ ବାବୁଙ୍କ ପରିବାର ପାଇଁ ଖର୍ଚ୍ଚ କରିଦେବି । ଗୋଟିଏ ଜୀବନ ଆପଣଙ୍କ ଲାଗି ନଷ୍ଟ ହୋଇଯାଇଛି, ଆଉ ଏ ସାମାନ୍ୟ ଟଙ୍କା ବା ଆପଣଙ୍କ ପାଖରେ କେତେ ? ଶୀଘ୍ର ଚେକ୍ ଖଣ୍ଡିଏ ଲେଖି-ଦିଅନ୍ତୁ ମୁଁ ଯିବି । ଆପଣଙ୍କ ଠାରୁ ଏ ଟଙ୍କା ନେଇ ଯାଉଛି । ଆପଣଙ୍କ ପ୍ରିୟ କଣ୍ଟ୍ରାକ୍ଟର ପୂର୍ଣ୍ଣେନ୍ଦୁ ବିଶ୍ୱାଳଙ୍କ ଠାରୁ ମଧ୍ୟ ନେବି । ଚେକ୍ ଶୀଘ୍ର ଲେଖନ୍ତୁ ଇଂଜିନିୟର ସାହେବ, ଅଯଥାରେ ଡେରି କରନ୍ତୁନି । ଆପଣ ମୋ ପରିଚୟ ଜାଣିବାକୁ ବ୍ୟସ୍ତ ହେଉଥିଲେ ନା ? ଶୁଣନ୍ତୁ ମୋର ପ୍ରକୃତ ପରିଚୟ, ମୁଁ ହେଉଛି "ଅପରାଧୀ" ।

ଇଂଜିନିୟର ସାହେବ ଅପରାଧୀ ନାଁ ଶୁଣିବା କ୍ଷଣି ଭୟରେ କଳାକାଠ ପଡିଗଲେ । ତାଙ୍କ ପାଟିରୁ ଅସ୍ପଷ୍ଟ ସ୍ୱରରେ ବାହାରି ଆସିଲା "ଅପରାଧୀ ?" ସେ ନିଜ ଡ୍ର ଖୋଲି ଚେକ୍ ବହିଟି କାଢ଼ି ଟ ୧୦୦୦୦ର ଖଣ୍ଡିଏ ଚେକ୍ ଲେଖିଦେଲେ । ଚେକ୍‌ଟି ଅପରାଧୀ ହାତକୁ ବଢାଇଦେଲା ବେଳେ ଭୟରେ ଥରି ଉଠୁଥାନ୍ତି ।

ଅପରାଧୀ ଚେକ୍ ଖଣ୍ଡିକ ନିଜ ବ୍ୟାଗରେ ରଖି କହିଲେ, ଏ ଟଙ୍କା ଫେରି ପାଇବାକୁ ବୃଥା ଚେଷ୍ଟା କରିବେନି । ଆପଣ ବ୍ୟାଙ୍କକୁ ଫୋନ୍ କଲାବେଳକୁ ମୁଁ ଏ ଟଙ୍କା ଡ୍ର କରି ନେଇ ସାରିଥିବି । ଆଜି ଆପଣଙ୍କୁ ମୁଁ ସତର୍କ କରି ଦେଉଛି, ଆପଣ

Digitized by srujanika@gmail.com

ଯଦି ପୁଣି ଲାଞ୍ଚ, ମିଛ, ଅନ୍ୟାୟର ଆଶ୍ରୟ ନଅନ୍ତି, ତେବେ ଆପଣଙ୍କୁ ମୁଁ ଦାଣ୍ଡରେ ଉଲଗ୍ନ କରିଦେବି । ଅପରାଧୀ ଯାହା କହେ, ତା କାମରେ କରେ । ଏ ଟଙ୍କା ପାଇବା ପାଇଁ ଯେପରି ଚେଷ୍ଟା ନକରନ୍ତି । ହଉ ଥାଅନ୍ତୁ ଦରକାର ହେଲେ ପୁଣି ଦେଖା କରିବି । ନମସ୍କାର ।" ଏତା କହି ଅପରାଧୀ ଭଦ୍ରଲୋକ ଘର ଘରୁ ବାହାରିଗଲେ । ଇଂଜନପୁର ସାହେବ ନିର୍ବାକ ହୋଇ ବସି ରହିଛନ୍ତି । ଉପରେ ତାଙ୍କର ପାଟିରୁ କଥା ବାହାରୁନ । ପ୍ରାୟ ଘଣ୍ଟାଏ ହେବ ସେହିପରି ବସି ରହିଥିଲେ । ମନରେ ତାଙ୍କର ପ୍ରଶ୍ନ ଉଠୁଥାଏ, ଏ ଅପରାଧୀ କିଏ ?

ଅପରାଧୀ ଚାଲିଯିବାର ପ୍ରାୟ ଘଣ୍ଟାକ ପରେ ଇଂଜନପୁର ସାହେବ ପ୍ରକୃତିସ୍ଥ ହୋଇ ବ୍ୟାଙ୍କକୁ ଫୋନ୍ କଲେ । ଉତ୍ତର ପାଇଲେ ତାଙ୍କ ଆକାଉଣ୍ଟରୁ ଟ ୧୦୦୦୦ ଟଙ୍କା ଉଠାଇ ନିଆ ଯାଇଛି । ମୁଣ୍ଡରେ ହାତଦେଇ ବସିଲେ ଇଂଜନପୁର ସାହେବ । ଘଣ୍ଟାକ ଭିତରେ ଏତେଗୁଡାଏ ଟଙ୍କା ତାଙ୍କର ଅପରାଧୀ ନେଇ-ଗଲା । କିନ୍ତୁ ଅପରାଧୀ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ଉପାୟତ କିଛି ନାହିଁ । ବାହାରେ କିଛି ନଜଣାଇ ଚୁପ୍‌ହୋଇ ରହିଯିବାହିଁ ଭଲ । ଆଜ ସକାଳଠାରୁ ଏପରି ଗୋଟାଏ ଘଟଣା ଘଟି ଗଲାଣି, ଭଦ୍ରଯାକ କଣ ହେଉଛି ଜାଣିହେଉନାହିଁ । ତାଙ୍କ ସାମନାରେ ବସି ତାଙ୍କୁ କେତେ ଦୋଷ ଦେଇଗଲା ଅପରାଧୀ । କିଛି ପ୍ରତିବାଦ କରି ପାରିଲେନି ସେ । ସେତିକବେଳେ କାନ୍ଥ ଘଣ୍ଟାରେ ଠନ୍ ଠନ୍ ହୋଇ ବାଜିଲା ଏଗାରଟା । ଟେବୁଲ ଉପରୁ କାଗଜଗୁଡାକ ଉଡ଼ିଯାଇ ତଳେ ଅସ୍ତବ୍ୟସ୍ତ ହୋଇ

Digitized by srujanika@gmail.com

ପଡ଼ିଗଲା । ଇଂଜିନିୟର ସାହେବ ଭାବିଲେ—ଆଜି ଏ କାଗଜ, ଘଣ୍ଟା, ସମସ୍ତେ ଯେପରି ତାଙ୍କୁ ଉପହାସ କରୁଛନ୍ତି ।

ସନାତନ ବାବୁଙ୍କ ଘର । ଦିନ ତିନିଟା ସମୟ ହେବ । ସନାତନ ବାବୁଙ୍କ ସ୍ତ୍ରୀ ସ୍ନିଗ୍ଧା ଦେବୀ ଘର ସଫା କରୁଥାନ୍ତି । ମନରେ ତାଙ୍କର ଭାବନା, ପିଲାଏ ସ୍କୁଲରୁ ଫେରିଲେ କଣ ଖାଇବେ । ପିଲାଗୁଡ଼ିକ ଦଶଟାବେଳକୁ ସ୍କୁଲ ଯାଇଛନ୍ତି ଆଉ ଘଣ୍ଟାଏ ପରେ ଫେରିବେ । ଭୋକରେ ପିଲାଗୁଡ଼ିକ ଝାଉଁଳି ପଡ଼ିଥିବେ । କିନ୍ତୁ ଘରେ ଖାଇବାକୁ କିଛି ନାହିଁ । ଏହାଭାବି ସ୍ନିଗ୍ଧାଦେବୀଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ିପଡ଼ିଲା । ଆଜକୁ ଛଅ ସାତଦିନ ହେଲା, ଚାକିରି ଉଦ୍ଦେଶ୍ୟରେ କୁଆଡ଼େ ଯାଇଛନ୍ତି । ସନାତନ ବାବୁଙ୍କ ମୃତ୍ୟୁ ପରଠାରୁ ସୁମନ୍ତ ବାବୁ ନେଇଛନ୍ତି ସନାତନ ବାବୁଙ୍କ ପରିବାରର ଦାୟିତ୍ୱ । ସୁମନ୍ତବାବୁଙ୍କର ସବୁବେଳେ ଚିନ୍ତା କିପରି ଏ ପରିବାରଟି ସୁଖରେ ଚଳିବ । ସେ ସ୍ନିଗ୍ଧା ଦେବୀଙ୍କୁ ବଡ଼ ଭଉଣୀପରି ଭକ୍ତି କରନ୍ତି । ସ୍ନିଗ୍ଧା ଦେବୀ ମଧ୍ୟ ସୁମନ୍ତଙ୍କୁ ନିଜର ସାନଭାଇଟି ପରି ସ୍ନେହ କରନ୍ତି । ସୁମନ୍ତ ଯିବା ପୂର୍ବରୁ ଘରଖର୍ଚ୍ଚ ପାଇଁ ଯାହା ଅଳ୍ପ ଜିନିଷ କିଣି ଦେଇ ଯାଇଥିଲେ, ସବୁ ସରିଗଲାଣି । କେତେବେଳେ ସୁମନ୍ତ ଆସିବ କେଜାଣି । ଦୁଇଦିନ ହେଲା ତା ଆସିବା ବାଟକୁ ଚାହିଁ ରହିଛନ୍ତି ସ୍ନିଗ୍ଧା ଦେବୀ । ଏହି ସମୟରେ ଦାଣ୍ଡ କବାଟ ଖଡ଼୍ ଖଡ଼୍ କରି କିଏ ଡାକିଲା । ସ୍ନିଗ୍ଧା, ସୁମନ୍ତ ଆସିଗଲାଣି ବୋଲି ଭାବି ଖୁସିହୋଇ ଯାଇ କବାଟ ଖୋଲିଲେ ଦେଖନ୍ତି ତ ଜଣେ ଭଦ୍ରଲୋକ । ଭଦ୍ରଲୋକ ଜଣକ ସ୍ନିଗ୍ଧା ଦେବୀଙ୍କୁ ଦେଖି

Digitized by srujanika@gmail.com

କହିଲେ "ନମସ୍କାର । ଆପଣ ମୋତେ ଚିହ୍ନି ପାରୁଛନ୍ତି କି ନାହିଁ କହି ପାରୁନି, କିନ୍ତୁ ମୋ ନାଁ ଶୁଣିଲେ ମୋତେ ନିଶ୍ଚୟ ଚିହ୍ନି ପାରିବେ । ମୁଁ ସନାତନର ପିଲାଦିନର ବନ୍ଧୁ । ମୋ ନାଁ ପ୍ରଣବ ମହାପାତ୍ର । ଆପଣ ସନାତନ ପାଖରୁ ମୋ କଥା ନିଶ୍ଚୟ ଶୁଣିଥିବେ ବୋଲି ମୋର ଆଶା । ଖବର କାଗଜରୁ ସମସ୍ତ ବିଷୟ ପଢ଼ି ମୁଁ ଜାଣିଛି । ମନ ମୋର ଦୁଃଖରେ ଭାଙ୍ଗି ପଡ଼ିଲା । ଆପଣ ଓ ପିଲାମାନେ କିପରି ଅଛନ୍ତି, ବୁଝିବାକୁ ମୋ ମନ ଅସ୍ଥିର ହୋଇ ଉଠୁଥିଲା, କିନ୍ତୁ ଅନେକ ଅସୁବିଧାର ସମ୍ମୁଖୀନ ହୋଇ ଆଜି ପର୍ଯ୍ୟନ୍ତ ମୁଁ ଆସି ପାରିନଥିଲି । ପିଲାମାନେ କୁଆଡ଼େ ଯାଇଛନ୍ତି କି ? କାହିଁ କାହାର ପାଟିତୁଣ୍ଡ ଶୁଭୁନି ।"

ପ୍ରଣବ ବାବୁଙ୍କ ପରିଚୟ ପାଇ ଓ ସ୍ୱାମୀଙ୍କ ବାଲ୍ୟବନ୍ଧୁ ବୋଲି ଜାଣିବା ପରେ ସ୍ନିଗ୍ଧା ଦେବୀଙ୍କର ଆଖି ଲୁହରେ ଛଳ ଛଳ ହୋଇଗଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଆପଣଙ୍କ ନାଁ ଆଗରୁ ଅନେକଥର ତାଙ୍କଠାରୁ ଶୁଣିଛି । ଆଜି ଆପଣ ଆସିଛନ୍ତି ଦେଖି ଖୁସି ଲାଗୁଛି । କିନ୍ତୁ ମୋ ଠାରୁ ଯେ, ବେଶୀ ଖୁସି ହେଉଥାନ୍ତେ, ସେ ଆଜି ନାହାଁନ୍ତି ।"

"ଆପଣ ଆଉ ଏତେ ଦୁଃଖକଲେ କଣ ହେବ ? ସନାତନ ଚାଲିଯାଇ ଆପଣଙ୍କୁ ଦେଇ ଯାଇଛି ଦାରୁଣ ଦୁଃଖ । ତା ପରି ଧର୍ମ ପରାୟଣ ବ୍ୟକ୍ତି ଯେ ଆତ୍ମହତ୍ୟା କରି ପାରିଲା, ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ପିଲାମାନଙ୍କୁ ଟିକିଏ ଡାକନ୍ତୁତ ମୁଁ ଦେଖିବି ।"

Digitized by srujanika@gmail.com

"ପିଲାମାନେ ସମସ୍ତେ ସ୍କୁଲ ଯାଇଛନ୍ତି । ଆପଣ ଟିକିଏ ବସନ୍ତୁ, ମୁଁ ଆସୁଛି ।"

"ଆପଣ ଚା' ବା ସରବତ କରିବାକୁ ଯିବେ ବୋଧହୁଏ । କିନ୍ତୁ ମୋର କିଛି ଦରକାର ନାହିଁ । ମୁଁ ବର୍ତ୍ତମାନ ଖାଇକରି ଆସିଛି । ଆପଣ ବସନ୍ତୁ, ପିଲାମାନଙ୍କୁ ନେଇ କିପରି ଚଳୁଛନ୍ତି କୁହନ୍ତୁତ ?"

"ଆଜି ଚଳୁଛି କିଣ । ସେହି ଭଗବାନ୍ ଚଳାଉଛନ୍ତି । ମୋର ଜଣେ ଭାଇ ବହୁତ ସାହାଯ୍ୟ କରୁଛି । ଘରବାଲାର ବହୁତ ଭଡ଼ା ବାକିଥିବାରୁ ସେ ସବୁଦିନ ପାଟି କରୁଛି । କିଣ କରିବ, ସବୁ ଅଖି ମୁଦି ସହିବାକୁ ପଡୁଛି । ମୁଁ ଚାକିରୀ ବା ଟ୍ୟୁସନ କରି କରନ୍ତି, ମାତ୍ର ସେ ସାନଭାଇ ମନା କରୁଛି । ସେ ଯାହା ଦଉଛି, ସେତିକରେ କଷ୍ଟରେ ଚଳୁଛୁ । ସରକାରଙ୍କ ଠାରୁ ଯାହା ସାହାଯ୍ୟ ମିଳିବା କଥା, ସେ ଆଶାତ ନାହିଁ ।"

"ଆପଣଙ୍କୁ ସନାତନର ଅଫିସରମାନେ କିଛି ଦେଇ ନାହାନ୍ତି । ସେମାନଙ୍କର ପ୍ରାଣ କିଣ ସନାତନର ମୃତ୍ୟୁ ପରେବି ଅନୁତାପ କରୁନି । ସେମାନେ ମଣିଷ ନା ନରପିଶାଚ ?"

"ହସାଇଲେ ପ୍ରଣବ ବାବୁ, ସେମାନଙ୍କ ପାଖରେ ଯଦି ମନୁଷ୍ୟତା ଥାଆନ୍ତା, ତେବେ ଅମ ପରିବାରରେ ଦୁଃଖର ଝଡ଼ ଉଠିନଥାନ୍ତା । ଏ ଝଡ଼ର ଆଜି ଶେଷ ନାହିଁ । ସବୁ ଦୁଃଖତକ ଥିଲା ଏହି ପରିବାର ପାଇଁ ।"

Digitized by srujanika@gmail.com

"ଆପଣ ଏପରି ବ୍ୟସ୍ତ ହୁଅନ୍ତୁ ନାହିଁ । ହେଲେ ନା ହେଲେ ସତ୍ୟର ବିଚାର ହେବ । ସତ୍ୟ, ନ୍ୟାୟ, ଧର୍ମକୁ ମାନ ମାନି ସନାତନ ପ୍ରାଣ ବଳିଦେଇ ଦେଲେ । ଆଜି ଆପଣ ସେହି ଦାରୁଣ ଯାତନା ଭିତରେ ଗୁପିହୋଇ ଯାଉଛନ୍ତି, ନିଶ୍ଚୟ ଦିନେ ସୁବିଚାର ହେବ । ମୋର ବାହାରେ କାମ ଅଛି । ପିଲାମାନଙ୍କୁ ଦେଖିପାରିଲିନି । ସୁବିଧା କରି ଆସି ପିଲାମାନଙ୍କୁ ଦେଖିଯିବି । ପିଲାମାନଙ୍କ ପାଇଁ କିଛି ଜଳଖିଆ ଆଣିଥିଲି, ରଖନ୍ତୁ, ପିଲାମାନେ ଆସିଲେ ଦେବେ ।" ଏହା କହି ପ୍ରଣବ ବାବୁ ଗୋଟିଏ ବଡ଼ ପ୍ୟାକେଟ୍ ସ୍ନିଗ୍ଧା ଦେବୀଙ୍କ ହାତକୁ ବଢ଼ାଇଦେଲେ ।

"ସ୍ନିଗ୍ଧା ଦେବୀ ଦରଦଭରା କଣ୍ଠରେ କହିଲେ "ଆପଣ କିଛି ଟିକିଏ ନ ଖାଇ ଯାଉଛନ୍ତି । ଆପଣଙ୍କୁ କିଏ ବା ଅଟକାଇବ । ଅଟକାଇବା ବନ୍ଧୁତ୍ୱ ନାହିଁ ।"

"ଆପଣଙ୍କୁ କହୁଛି, ମୁଁ ଆସିବି । ଆସିଲେ ଗୁଡ଼, ସରବତ ଖାଇବିନି । ପୁରାପୁରି ପଖାଳ, ଶାଗ, ଭଜା ପ୍ରଭୃତି ଖାଇକରି ଯିବି । ହଉ ଆପଣ ଥାଆନ୍ତୁ ମୁଁ ଯାଉଛି । ପରେ ଆସିବି । ନମସ୍କାର ।"

ପ୍ରଣବ ବାବୁ ଚାଲିଯିବା ପରେ ସ୍ନିଗ୍ଧା ଦେବୀ ଦାଣ୍ଡକବାଟ ଦେଇ ଆସି ପ୍ୟାକେଟଟିକୁ ଖୋଲି ବସିଲେ । ପ୍ୟାକେଟଟିକୁ ଖୋଲି ଦେଖିଲେ ଗୁଡ଼ିଏ ମିଠା ଅଛି । ମିଠା ଉପରେ ଗୋଟିଏ ଲଫାପା ଅଛି । ଲଫାପାଟି ଉପରେ ନିଜ ନାଁ ଦେଖି ଲଫାପାଟିକୁ ଖୋଲିଲେ । ଲଫାପାଟି ଖୋଲି ଦେଖିଲେ

Digitized by srujanika@gmail.com

କେତେଗୁଡ଼ିଏ ଶହେ ଟଙ୍କିଆ ନୋଟ ଓ ଗୋଟିଏ ଚିଠି ।
ଚିଠିଟିରେ ଲେଖା ଅଛି—

ମାନନୀୟା

ସ୍ନିଗ୍‌ଧା ଦେବୀ,

ମୋର ନମସ୍କାରଟି ଗ୍ରହଣ କରିବାକୁ କୁଣ୍ଠାବୋଧ କରିବେନି । ଆପଣଙ୍କୁ ମୁଁ ମୋର ଠିକ୍ ଠିକଣା ଦେଇନି । ସନାତନ ବାବୁଙ୍କ ମୃତ୍ୟୁରେ ମୁଁ ବଡ଼ ମର୍ମାହତ । ଆପଣଙ୍କୁ ଏ ଦୁଃସମୟରେ ସାହାଯ୍ୟ କରିବା ମୋର କର୍ତ୍ତବ୍ୟ । ସନାତନ ବାବୁଙ୍କ ପରି ସଚ୍ଚୋଟ ଲୋକ ଯଦି ଏଭଳି ମୃତ୍ୟୁ ବରଣ କରି-ପାରିଲେ, ସେଥିପାଇଁ ଦାୟୀ କିଏ ? ଦାୟୀହେଉଛନ୍ତି ଏ ଧନ-ଲୋଭୀ ଅଫିସର ବୃନ୍ଦ । ଏମାନଙ୍କୁ ଉପଯୁକ୍ତ ଶିକ୍ଷାଦବାକୁ କେହି ନାହାଁନ୍ତି । କିନ୍ତୁ ଏମାନଙ୍କୁ ଉପଯୁକ୍ତଶିକ୍ଷା ଦେବି ମୁଁ । ଆପଣଙ୍କର ସମସ୍ତ ସୁବିଧା, ଅସୁବିଧା ବୁଝିବା ପାଇଁ ଆସିଥିଲି ।

ଏ ଟଙ୍କା ମୁଁ ଆପଣଙ୍କୁ ଦେଇ ଯାଉଛି । ପିଲାମାନଙ୍କ ଲୁଗାପଟା ଓ ଖାଇବା ଖର୍ଚ୍ଚରେ ଲଗାଇବେ । ଘରବାଲାକୁ ମୁଁ ଟଙ୍କା ଦେଇ ଦେଇଛି । ଘରଭଡ଼ା ରସିଦ୍ ଅପଣଙ୍କ ପାଖକୁ ପଠାଇଲି, ରଖିନେବେ । ଏ ଟଙ୍କା ଆପଣଙ୍କୁ ମୋର ଦାନ ନୁହେଁ କି କରଜ ମଧ୍ୟ ନୁହେଁ । ଏ ଟଙ୍କା, ସେହି ଧନୀମାନଙ୍କର । ଯାହାଙ୍କ ଲାଗି ସନାତନ ବାବୁ ପ୍ରାଣ ଦେଲେ । ଏ ଟଙ୍କା ଆପଣ ଖର୍ଚ୍ଚ କରିବେ । କିଛି ଭାବିବେନି । ଯିଏ ଜାଲ୍, ଜୁଆ, ଲାଞ୍ଚ-ନେଇ ଟଙ୍କା ବ୍ୟାଙ୍କରେ ଜମା କରେ, ସେ ଟଙ୍କା ନେଇ ଆସି ମୁଁ ମହତ କାର୍ଯ୍ୟରେ ଲଗାଏ । ଜନସାଧାରଣଙ୍କର ସେବା କରିବାକୁ

Digitized by srujanika@gmail.com

ମୋ ଜୀବନର ବ୍ରତ କରି ନେଇଛି । ଆପଣ ମୋ ପରିଚୟ ପାଇ ଡରିଯିବେନି । ମୁଁ ସ୍ୱୈର କି ଡକାୟତ ନୁହେଁ । ଆପଣଙ୍କ ପରି ମୁଁ ଜଣେ ରକ୍ତମାଂସର ମଣିଷ । ମୋର ମଧ୍ୟ ଆପଣଙ୍କ ପରି ହୃଦୟ ଅଛି । ମୋର ପରିଚୟ ଶୁଣନ୍ତୁ । ମୁଁ ହେଉଛି ଗରିବର ବନ୍ଧୁ, ଧନୀମାନଙ୍କର ଶତ୍ରୁ । ଚିର ପରିଚିତ ଅପରାଧୀ । କିନ୍ତୁ ଆପଣଙ୍କ ପାଖରେ ମୁଁ ଅପରାଧୀ ନୁହେଁ । ଆପଣଙ୍କ ପାଖରେ ମୁଁ ସନାତନ ବାବୁଙ୍କ ବାଲ୍ୟବନ୍ଧୁ ପ୍ରଣବ । ରହୁଛି । ପିଲାମାନଙ୍କୁ ମୋର ସ୍ନେହାଶୀଷ । ଦରକାର ହେଲେ ଆଉ ଥରେ ଦେଖା କରିବି । ସେତେବେଳେ ମୋତେ ଦେଖି ଡରିବେନି । ସୁମନ୍ତବାବୁଙ୍କୁ ମୋର ଶୁଭେଚ୍ଛା ଜଣାଇବେ । ଇତି ।

ଆପଣଙ୍କର

ବନ୍ଧୁ-ପ୍ରଣବ (ଅପରାଧୀ)

ଚିଠିଟି ପଢ଼ିସାରି ସ୍ନିଗ୍ଧା ଦେବୀ ସ୍ତମ୍ଭୀଭୂତ ହୋଇ ବସି ପଡିଲେ । ଏ ଘଟଣା ସବୁ କଣ, ତାଙ୍କୁ ବିଶ୍ୱାସ ଲାଗୁନଥାଏ । ସୁମନ୍ତ ଆସିଲେ ତାଙ୍କୁ ସମସ୍ତ ଘଟଣା ଜଣାଇବେ । ଯାହାହେଉ ପ୍ରଣବ ବାବୁ ଅପରାଧୀ ହେଲେ ବି ତାଙ୍କର ହୃଦୟରେ ମମତା ଅଛି । ପିଲାଙ୍କ ଭୋକିଲା ପେଟ ପାଇଁ ସେ ଆଜି ଆହାର ଯୋଗାଇ-ଛନ୍ତି । ଏତେଗୁଡ଼ାଏ ଟଙ୍କା କେଉଁଠି ସେ ରଖିବେ । ଭଗବାନଙ୍କୁ ମନେ ମନେ ଡାକୁଥାନ୍ତି ସୁମନ୍ତ କପରି ଆଜି ଶୀଘ୍ର ଘରକୁ ଫେରନ୍ତୁ । ଏତିକିବେଳେ ପିଲାମାନେ ଆସି ଦାଣ୍ଡ ଦ୍ୱାରରେ ଡାକିଲେ । ସ୍ନିଗ୍ଧାଦେବୀ ଟଙ୍କା ଓ ଚିଠିକି ବାକ୍ସରେ ରଖିଦେଇ ପିଲାଙ୍କୁ କବାଟ ଫିଟାଇଦେଲେ । ପିଲାଏ ଆସିବା

Digitized by srujanika@gmail.com

ସଙ୍ଗେ ସଙ୍ଗେ ସେମାନଙ୍କୁ ମିଠେଇ ଖାଇବାକୁ ଦେଲେ । ପିଲାମାନେ ମିଠାଇ ଖାଇ ବହୁତ ଖୁସି ହେଲେ । କହିଲେ, 'ମା,ଆ, ପ୍ରଣବ ମଉସାଙ୍କୁ ଆମେ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲନ ।'

"ସେ କହନ୍ତନ୍ତି, ସୁବିଧା କରି ଆଉଥରେ ଆସିବେ ।" ସେତେବେଳକୁ ଘୁଇ ୨ଲଇଟା ବେଳ ହେଲାଣି । ସ୍ନିଗ୍ଧା ଦେବୀ ଘରର ବାକି ପଡ଼ିଥିବା କାମଗୁଡ଼ିକ କରିବାରେ ଲାଗି ପଡ଼ିଲେ । କିନ୍ତୁ ମନଟା ତାଙ୍କର ବାମରେ ଲାଗୁନଥାଏ । ଆଖି ଆଗରେ ଦିଶିଯାଉଥାଏ ପ୍ରଣବ ବାବୁଙ୍କର ଅମାୟିକ ବ୍ୟବହାର ।

× × ×

କଟକ, ଭୁବନେଶ୍ୱର ରାସ୍ତା ମଝିରେ ଥିବା ଜଙ୍ଗଲଟି ଆଜି ତାଲି ଆଉ ଜଙ୍ଗଲ ନାହିଁ । ସେଠାରେ ମୁଣ୍ଡ ଟେକି ଠିଆ ହୋଇଛି କେତେଗୁଡ଼ିଏ ଅକାଶ ଚୁମ୍ବୀ ହିତଲପ୍ରାସାଦ । ଘନ ଅନ୍ଧକାରକୁ ଦୂରଭୂତ କରି ଝଲକ ଉଠୁଛି ବିଜୁଳିବତିର ଆଲୋକ । ପଶୁ ପକ୍ଷୀଙ୍କ ବାସ ସ୍ଥାନ ଅଜି ଜନକୋଳାହଳରେ ହସି ଉଠୁଛି । କାହାର ଏ ସୁନ୍ଦର କଳ୍ପନା ଆଜି ବାସ୍ତବତାରେ ରୂପ ପାଉଛି । ଓଡ଼ିଶାରେ ଠିଆ ହେଉଛି ଏକ ଗବେଷଣାଗାର ।

ଅଳ୍ପ ଅଳ୍ପ ଦୂରତାରେ ତିଆରି ହୋଇଛି ସୁନ୍ଦର କୋଠାଗୁଡ଼ିକ । ତୋଠା ଗୁଡ଼ିକପାଖରେ ବଡ ବଡ ଟାଙ୍କିଣ୍ଡା ଗବେଷଣାଗାରର ସାମନାରେ ଶୋଭା ପାଉଛି ବିଶ୍ୱ ବିଖ୍ୟାତ ଡକ୍ଟର ମିଶ୍ରଙ୍କର ଶୁଭ୍ରପ୍ରସ୍ତର ନିର୍ମିତ ଏକ ପ୍ରତିମୂର୍ତ୍ତି । ଆଉ କେତେ ଦିନ ପରେ ଏହି ଗବେଷଣାଗାର କାର୍ଯ୍ୟ ଶେଷ

Digitized by srujanika@gmail.com

ହୋଇଯିବ । ଡକ୍ଟର ମିଶ୍ରଙ୍କ ତୃତୀୟ ବାର୍ଷିକ ଶ୍ରାଦ୍ଧ ଉତ୍ସବରେ ଏହା ଉଦ୍‌ଘାଟନ କରାଯିବ ।

ଏହି ଗବେଷଣାଗାର ପ୍ରତିଷ୍ଠା ଲାଭ କରିବା ଦେଖି ପ୍ରତ୍ୟେକ ଓଡ଼ିଆ ଯୁବକଙ୍କ ପ୍ରାଣରେ ଗବେଷଣା କରିବାର ଆଶା ଜାଗି-ଉଠୁଛି । କେଉଁଦିନ ସେ ଶୁଭଦିନ ଆସିବ । ଗୁଣୀ ଅଧ୍ୟାପକଙ୍କ ଗହଳରେ ଏ ଗବେଷଣାଗାର ହସି ଉଠିବ ।

ସ୍ୱପ୍ନାଦେବୀ ସବୁବେଳେ କାମରେ ବ୍ୟସ୍ତ । ଡକ୍ଟର ମିଶ୍ରଙ୍କ କଳ୍ପନାକୁ ଆଜ ବାସ୍ତବ ରୂପ ଦବାକୁ ଯାଉଛନ୍ତି । ଡକ୍ଟର ମିଶ୍ରଙ୍କ ନାମ ଅନୁସାରେ ଏ ଗବେଷଣାଗାରର ନାମ କରଣ ହେବ "ମିଶ୍ର ଇନ୍‌ଷ୍ଟିଚ୍ୟୁଟ" । ଡାଇରେକ୍ଟର ରହିବେ ସ୍ୱପ୍ନା ଦେବୀ । ଗବେଷଣାଗାର ପ୍ରତିଷ୍ଠା ଲାଭ ନକରୁଣୁ କେତେ ଗୁଣୀ ଗବେଷଣା ବୃତ୍ତି ପାଇଁ ଦରଖାସ୍ତ କରିଛନ୍ତି । ସମସ୍ତ କାର୍ଯ୍ୟ ନିଜେ ସ୍ୱପ୍ନା ଦେବୀ ବୁଝୁଛନ୍ତି । କାରଣ ଏ ସମସ୍ତ କାମ ଶୀଘ୍ର ସରି ଡକ୍ଟର ମିଶ୍ରଙ୍କ ଶ୍ରାଦ୍ଧ ଉତ୍ସବ ଦିନ ଗବେଷଣାଗାର ଉଦ୍‌ଘାଟିତ ହେବ ସେଥିପାଇଁ ସ୍ୱପ୍ନାଦେବୀ ନିଜ ଖାଇବା ପିଇବା ଭୁଲି ଉତ୍ସାହିତ ହୋଇ ଦିନ ରାତି କାମ କରି ଚାଲିଛନ୍ତି । ବାସ୍ତବିକ୍ ସ୍ୱପ୍ନା ଦେବୀ ଶକ୍ତିମୟୀ ନାରୀ ।

ଗୁରୁଆଡ଼େ ଚହଳ ପକେଇ ଦେଇଛି ଅପରାଧୀର ଅଭିନୟ । ସମସ୍ତେ ନିଜ ଜୀବନ ପ୍ରତି ପ୍ରମାଦ ଗଣିଲେଣି । ଅପରାଧୀ ଯେ କେବଳ ସତ୍ୟ, ନ୍ୟାୟ ଦେଖାଇ ଟଙ୍କା ଅପହରଣ

Digitized by srujanika@gmail.com

କରୁଛନ୍ତି ତା ନୁହେଁ । ପ୍ରବପ୍ରର ଗୋଟାଏ ଉଚ୍ଚାପ୍ରଚ ଦଳ ସାଙ୍ଗ ଲୋକସ ଲୁଟ୍‌ତରାଜ ସବୁ କଲଣି । ଆଗେ ଅପରାଧୀ ଟଙ୍କା ନେବା ପୂର୍ବରୁ କେତେବେଳେ ଟଙ୍କା ନେବ ଓ କାହିଁକି ନେବ, ନେଇ କଣ କରିବ ଏ ସବୁ ଜଣାଉଥିଲା । କିନ୍ତୁ ଏବେ ରାତିର ଘନ ଅନ୍ଧକାରରେ ଲୋକଙ୍କୁ ହତ୍ୟାକରି ସୁନା, ଟଙ୍କା ପ୍ରଭୃତି ଚୋରି କରି ନେଇ ଯାଉଛି । ଚୋରି କରିବା ପରେ ପୋଲିସ ପାଖକୁ ଗୋଟିଏ ଚିଠି ଦେଉଛି ଯେ, କିଏ ଚୋରି କରିଛି, ଅନୁସନ୍ଧାନ କରି କିଛି ଲାଭ ନାହିଁ । ମୋ ଅନୁସନ୍ଧାନ ନବା ପୂର୍ବରୁ ଆପଣଙ୍କୁ ମୃତ୍ୟୁ ସୁନିଶ୍ଚିତ ।

ଭୁବନେଶ୍ୱରଆଡେ ସତର୍କ ପୋଲିସ ଜଗି ରହିଛନ୍ତି । ଅପରାଧୀର ଦୌରାତ୍ମ୍ୟରେ ପୋଲିସ ଦଳ ମଧ୍ୟ ନିଜ ଜୀବନକୁ ବିପନ୍ନ ମନେ କଲେଣି ।

ଦୁଇଦିନ ତଳେ ବ୍ୟାଙ୍କ ମେନେଜର ଦେବାଶିଷ ମହାପାତ୍ରଙ୍କୁ ମହାନଦୀ କୂଳ ଜୋବ୍ରାଘାଟ ଠାରେ ଯେପରି ଅମାନୁଷିକ ଭାବରେ ହତ୍ୟା କରାଯାଇଛି, ତାହା ଦେଖିବା ପରେ ଲୋକମାନେ ତଟସ୍ଥ ହୋଇ ଗଲେଣି ।

ଦେବାଶିଷ ବାବୁଙ୍କ ଶବକୁ ପୋଷ୍ଟମର୍ଟମ କରାଯାଇଛି । ପୋଲିସ ଦେବାଶିଷ ବାବୁଙ୍କ ଶୋଇବା ଘର ଖାନତଲାସ କରି ଗୋଟିଏ ଡାଏରୀ ବହି ଓ କେଉଁ ଏ ଗୁରୁତ୍ୱ ପୂର୍ଣ୍ଣ ଚିଠି ପାଇଛନ୍ତି । ଯେଉଁ ଚିଠି ପାଇ ଦେବାଶିଷ ବାବୁ ଯୋବ୍ରାଘାଟକୁ ଦୌଡ଼ିଯାଇ

Digitized by srujanika@gmail.com

ମରଣକୁ ବରଣ କରିନେଲେ । ସେହି ଚିଠି ଖଣ୍ଡିକ ପୋଲିସ ପାଇଛନ୍ତି । ଚିଠିଟିରେ ଲେଖାଅଛି ।

ଦେବାଶିଷ ବାବୁ,

ଏ ଚିଠି ପାଇ ଆପଣ ଆଶ୍ଚର୍ଯ୍ୟ ହେବେନି । ଟଙ୍କା ମୋର ଦରକାର । ଆପଣଙ୍କ ପାଖରେ ସାତହଜାର ଟଙ୍କା ଅଛି । ସେ ଟଙ୍କା ମୋର ଦରକାର । ଆପଣ ସେ ସାତହଜାର ଟଙ୍କା ମତେ ଦେଇ ଦିଅନ୍ତୁ । ଯଦି ସେ ଟଙ୍କା ଆପଣ ମୋତେ ନଦିଅନ୍ତି, ତେବେ ଆପଣଙ୍କୁ ହତ୍ୟା କରିବାକୁ ମୁଁ ପଛେଇବନି । କାଲି ରାତି ଆଠଟା ସମୟରେ ଜୋଡ଼ା ଘାଟ ଠାରେ ମୁଁ ଆପଣଙ୍କ ଅପେକ୍ଷାରେ ଥିବ । ଅପଣ ନିଜେ ଆସି ସାତହଜାର ଟଙ୍କା ଆଣି ମୋତେ ଦେଇଯିବେ । ଯଦି ମୋ ନିର୍ଦ୍ଦେଶ ଅନୁଯାୟୀ ଟଙ୍କା ଆଣି ନଦିଅନ୍ତି ତେବେ ଆପଣଙ୍କ ମୃତ୍ୟୁ ସୁନିଶ୍ଚିତ । ଅପେକ୍ଷାରେ ରହିଲି । ଇତି ।

—ଅ ପ ରା ଧୀ

ଚିଠିଟି ପାଇ ଦେବାଶିଷ ବାବୁ ବିଚଳିତ ହୋଇ ନଥିଲେ, କି ପୋଲିସରେ ଖବର ଦେଇ ନଥିଲେ । କାରଣ ତାଙ୍କର ଆତ୍ମ ବିଶ୍ୱାସ ଥିଲା । ସେ ସବୁଦିନ ପରି ସେ ଦିନ ରାତିରେ ସମସ୍ତ ଘଟଣା ଡାଏରୀରେ ଲେଖିଥିଲେ । ଡାଏରୀରେ ଲେଖିଛନ୍ତି । ସେ ଟଙ୍କା ତାଙ୍କ ନିଜର ଟଙ୍କା ନୁହେଁ । ସେ ବ୍ୟାଙ୍କର ଟଙ୍କା । ବ୍ୟାଙ୍କ ଟଙ୍କା ସେ ଅପରାଧୀକୁ ଦେବେ କେମିତି ? ଅପରାଧୀ ତ ଅନ୍ୟାୟ କରେନି । ଏତେବଡ଼ ଅନ୍ୟାୟ କଥା ଲେଖିଲା କିପରି ?

Digitized by srujanika@gmail.com

ସେ କାଲି ରାତିରେ ଟଙ୍କା ନନେଇ ଖାଲି ହାତରେ ଯାଇ ଅପରାଧୀକୁ ସମସ୍ତ କଥା ବୁଝାଇ କହିଦେବେ । ଅପରାଧୀ ନିଶ୍ଚୟ ଖୁସି ହେବ ଯେ ଦେବାଶିଷ ବାବୁ ମିଛ କହୁନାହାନ୍ତି କି ମିଥ୍ୟା ଅନ୍ୟାୟକୁ ପ୍ରଶ୍ରୟ ଦେଉନାହାନ୍ତି । ଦେଖାଯାଉ କାଲି ରାତିଟି ଶୁଭ କି ଅଶୁଭ ।

ପୋଲିସ ଡାଏରୀରୁ ଏତିକି ଜାଣିବା ପରେ ଘଟଣାଟି ବେଶ୍ ସ୍ପଷ୍ଟହୋଇ ଉଠିଲା । ଚିଠିର ନିର୍ଦ୍ଦେଶ ଅନୁଯାୟୀ ଦେବାଶିଷ ବାବୁ ସେ ଦିନ ରାତି ଆଠଟା ସମୟରେ ଜୋଡ଼ା ଘାଟକୁ ଯାଇଥିଲେ । ଟଙ୍କା ନେଇ ନଥିଲେ । ଟଙ୍କା ତାଙ୍କର ନୁହେଁ, ବ୍ୟାଙ୍କର ଟଙ୍କା, ସେ କିପରି ଅପରାଧୀକୁ ସେହି ଟଙ୍କା ଦେବେ ? ସତ୍ୟ, ନ୍ୟାୟର ବିଗ୍ରହ ଅପରାଧୀ କରେ ବୋଲି ସମସ୍ତେ କୁହନ୍ତି । କିନ୍ତୁ ଏତେ ବଡ଼ ଅନ୍ୟାୟ ଅପରାଧୀ କିପରି କଲା । ଦେବାଶିଷ ବାବୁ ଟଙ୍କା ନନେଇ ତା ପାଖକୁ ଖାଲି ହାତରେ ଯାଇଥିବାରୁ ରାଗରେ ଅପରାଧୀ ଅସ୍ଥିର ହୋଇ ଉଠିଥିଲା । ଦେବାଶିଷ ବାବୁଙ୍କୁ ନିର୍ମମ ଭାବରେ ପ୍ରହାର କଲା । ମହାନଦୀ କୂଳ ଉପରେ ବହୁତ ସମୟ ଧରି ଧସ୍ତା ଧସ୍ତି ଚାଲିଥିଲା । ସେ ଧସ୍ତା ଧସ୍ତିରେ ଦେବାଶିଷ ବାବୁଙ୍କ ସାର୍ଟ ଚିରି ଯାଇଛି ଓ ଦେହରେ ବହୁତ କ୍ଷତ ବିକ୍ଷତ ଚିହ୍ନ ଅଛି । ଶେଷରେ ଦେବାଶିଷ ବାବୁ ଅପରାଧୀ ହାତରେ ପ୍ରାଣ ଦେଇଦେଲେ, କିନ୍ତୁ ଅପରାଧୀ ଟଙ୍କା ପାଇ ପାରିଲାନି । ତା ପରଦିନ ସକାଳ ଛଅଟା ବେଳେ ପୋଲିସମାନେ ଦେବାଶିଷ ବାବୁଙ୍କର କ୍ଷତ ବିକ୍ଷତ ମୃତ ଶରୀରକୁ ଉଦ୍ଧାର କରିଥିଲେ ।

Digitized by srujanika@gmail.com

ଦେବାଶିଷ ବାବୁଙ୍କ ଡ଼ାଏରୀ ଓ ଚିଠିରୁ ପୋଲିସ ସମସ୍ତ ଘଟଣା ଜାଣି ପାରିଲେ । ଅତ୍ୟଧିକ ମାତ୍ରା ଖାଇବା ଫଳରେ ଦେବାଶିଷ ବାବୁଙ୍କର ମୃତ୍ୟୁ ଘଟିଛି ବୋଲି ପୋଷ୍ଟମର୍ଟମ ରିପୋର୍ଟରେ ବାହାରିଛି । ଏ ସମସ୍ତ ତଥ୍ୟରୁ ଅପରାଧୀ ଯେ, ନୃଶଂସ ହତ୍ୟାକାଣ୍ଡ, ଏଥିରେ କାହାରି ସନ୍ଦେହ ରହିଲା ନାହିଁ । ପୋଲିସ ଦଳ ତତ୍ପର ହୋଇ ଅପରାଧୀର ଅନୁସନ୍ଧାନ କରୁଥାନ୍ତି । କିନ୍ତୁ ପୋଲିସ ଆଖିରେ ଧୂଳି ଦେଇ ଦୁର୍ବୃତ୍ତ ଅପରାଧୀ ଗୋଟିକ ପରେ ଗୋଟିଏ କାଣ୍ଡ କରି ଚାଲିଥାଏ ।

ଦୈନିକ ଖବର କାଗଜରେ ପୋଲିସର ଅପାରଗତା ନେଇ ନାନାପ୍ରକାର ଖବର ପ୍ରକାଶିତ ହେଲା । ଯେତିକି ପୋଲିସର ଅପାରଗତା ନେଇ ଖବର ପ୍ରକାଶିତ ହେଲା, ସେତିକି ଅପରାଧୀର ଦୌରାତ୍ମ୍ୟ ବଢ଼ିବାକୁ ଲାଗିଲା । ପୋଲିସ ଅଫିସରମାନେ ମୁଣ୍ଡରେ ହାତଦେଇ ବସିଗଲେ । ଏ ଅପରାଧୀ କିଏ ?

ମଙ୍ଗଳାବାଗ ଥାନାରେ ଏସ୍. ପି. ସାହେବ ବସି ଗୋଟିଏ ଚିଠି ପଢ଼ୁଥାଆନ୍ତି । ପାଖରେ ଥାଆନ୍ତି କେତେଜଣ ପୋଲିସ ଅଫିସର । ସମସ୍ତେ ଚିନ୍ତାମଗ୍ନ । ଚିଠିଟି ଅପରାଧୀ ନିକଟରୁ ଆସିଛି । ଲେଖାଯାଇଛି ଏସ୍.ପି.ଙ୍କ ପାଖକୁ । ଲେଖାଅଛି—

ପ୍ରିୟ ଏସ୍. ପି. ସାହେବ,

ନମସ୍କାର । ଆପଣ ଏ ଚିଠିଟି ପାଇ ଆଶ୍ଚର୍ଯ୍ୟ ହେବେ । ଆପଣଙ୍କ ପାଖରେ ଅନେକ ଦିନ ହେଲା ମୁଁ ପରିଚିତ । କିନ୍ତୁ ଆପଣ ମୋତେ ଆଜି ପର୍ଯ୍ୟନ୍ତ ଭଲକରି ଚିହ୍ନି ପାରିଲେନି ।

Digitized by srujanika@gmail.com

ଆପଣ ମୋତେ ଦଣ୍ଡଥର ଦେଖିଲେ ବି ଚହ୍ନି ପାରୁ ନାହାଁନ୍ତି । ତେବେ ମୋର ପ୍ରକୃତ ତ ଆପଣଙ୍କ ପାଖରେ ଅଚହ୍ନା, ଅଜଣା ନୁହେଁ ।

ମୁଁ ଟଙ୍କା ହରଣଚୂକ କରେ ସତ । କନ୍ତୁ ମୁଁ ଟଙ୍କା କପରି ନିଏ ଓ କାହିଁକି ନଏ ତା ତ ଆପଣ ଜାଣିଛନ୍ତି । ଯିଏ ଅନ୍ୟାୟ, ଅଧର୍ମ ବା ଲାଞ୍ଚ ନେଇ ଟଙ୍କା ସାଇତ ରଖେ, ତାହାର ଠାରୁ ମୁଁ ଟଙ୍କା ଛଡ଼ାଇ ନେଇ ଉପବାସରେ ରହୁଥିବା ଗରିବମାନଙ୍କୁ ବାଣ୍ଟି ଦଏ । ଯାହା ପାଖରୁ ଟଙ୍କା ନଏ, ତା ପାଖକୁ ଚିଠି ଲେଖି ପ୍ରଥମେ ଟଙ୍କା ମାଗେ, ସେ ନଦେଲେ ଜବରଦସ୍ତି ନେଇଯାଏ । କନ୍ତୁ ମାଡ ମାରି ବା ହତ୍ୟା କରି, କାହାଠାରୁ କେବେ ଟଙ୍କା ନଏନ । ମୋର ପ୍ରକୃତ ନ୍ୟାୟ, ସତ୍ୟ, ଧର୍ମରେ ରହବା । ଅସତ୍ କର୍ମ ନକରିବା । ଏହ ଶିକ୍ଷା ମୁଁ ସମସ୍ତଙ୍କୁ ଦଏ ।

କନ୍ତୁ ଏହ କେତେଦନ ହେଲା ମୋ ନାଁରେ ଯେଉଁ ବୀଭତ୍ସ କାଣ୍ଡ ସବୁ ଘଟି ଯାଉଛି, ସେ ସବୁ କାହା କାମ ଆପଣ ଜାଣନ୍ତି ? ତାହା ମୋ କାମ ନୁହେଁ । ମୋ ନାଁ ଦେଇ ଅନ୍ୟ ଗୋଟିଏ ଜଘନ୍ୟ ଦସ୍ୟୁ ଦଳ ଏ ଜଘନ୍ୟ କାମ କରି ଚାଲଛନ୍ତି । ଆପଣ ସେ ଦସ୍ୟୁ ଦଳକୁ ଧରିବାକୁ ଚେଷ୍ଟା କରନ୍ତୁ । ମୁଁ ଆପଣଙ୍କୁ ସାହାଯ୍ୟ କରିବ ।

ଆପଣ ମୋ କଥା ବଶ୍ୱାସ କରିବେ କ ନାହିଁ ଜାଣିନ । ତେବେ ଆପଣ ଅତୀତର ସବୁ ଘଟଣାଗୁଡକ ମନେ ପକାନ୍ତୁ । ଯେତେ ଟଙ୍କା ହରଣଚୂକ କରିଛି ସେ ସମସ୍ତତ ଆପଣ ଜାଣି-

Digitized by srujanika@gmail.com

ଛନ୍ତି । ଆପଣଙ୍କ ବନ୍ଧୁଙ୍କୁ କପଟରେ ବନ୍ଦୀକରି ଏସ୍.ପି. ସେପାହେବ ପିନ୍ଧି ଶଶାଙ୍କବାବୁଙ୍କ ଘର୍ ରେଲଷ୍ଟେଶନ ଜବତ କରିଥିଲି ଓ ଶଶାଙ୍କ-ବାବୁଙ୍କୁ କପଟରେ ଗିରଫ କରିଥିଲି । ଏ ସମସ୍ତ ଘଟଣା କଣ ଆପଣ ଏତେଶୀଘ୍ର ଭୁଲିଗଲେଣି । ସେହି ଅପରାଧୀ ମୁଁ । ଯେକି ମିଥ୍ୟା, ଅନ୍ୟାୟ, ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ କରି ଆସିଛି ।

•

କିନ୍ତୁ ମୋ ଅଜାଣତରେ ଗୋଟାଏ ଦସ୍ୟୁଦଳ ମୋ ନାଁ ଲେଖି ଚୋରି, ଲୁଟ୍, ହତ୍ୟା କରି ଚାଲିଛନ୍ତି । ଏହା ମୁଁ ସହି ପାରିବିନି । କିନ୍ତୁ ଏ ଦସ୍ୟୁଦଳକୁ ଧରି ଆପଣଙ୍କ ହାତରେ ସମର୍ପିବି । ଏ ଦସ୍ୟୁଦଳ ଜାଣି ନାହାଁନ୍ତି ଅପରାଧୀ କିଏ ? ଅପରାଧୀ ଆଖିରେ ଧୂଳି ଦେଇ ଏ ଦସ୍ୟୁଦଳ ଖସିଯିବେ ବୋଲି ଭାବିଛନ୍ତି । ଭାବିପାରୁନାହାଁନ୍ତି ଅପରାଧୀ କଣ କରିପାରେ । ଦରକାର ହେଲେ ଆପଣଙ୍କର ସାହାଯ୍ୟ ଗ୍ରହଣିବି । ମୋର ଅନୁରୋଧ, ଆପଣ ଯେପରି ମୋତେ କଦର୍ଯ୍ୟ ଦସ୍ୟୁ ବୋଲି ନ ଭାବନ୍ତୁ । ଆଜି ଏତିକିରେ ବିଦାୟ ନେଉଛି । ଇତି ।

ଆପଣଙ୍କର

ଚୀର ପରିଚିତ ଅପରାଧୀ ।

ଚିଠି ପଢ଼ିସାରିବା ପରେ ସମସ୍ତଙ୍କ ମନରେ ପ୍ରଶ୍ନ ଉଠୁଛି ପ୍ରକୃତ ଅପରାଧୀ କିଏ ? ଏସ୍.ପି. ସାହେବ ଏକ ଦୀର୍ଘ ନିଶ୍ୱାସ ପକାଇ କହିଲେ, କିଏ ଏହି ଅପରାଧୀ ? ସମସ୍ତଙ୍କ ମୁଣ୍ଡ ଖରାପ କରି ଦେଉଛି । ଏହା କହି ଚିଠିଟିକୁ ଯତ୍ନ ସହକାରେ ପକେଟରେ ରଖିଲେ । ବର୍ତ୍ତମାନ ଆମର କର୍ତ୍ତବ୍ୟ କଣ ?

Digitized by srujanika@gmail.com

ଡ଼. ଏସ୍. ପି. ସାହେବ କହିଲେ, "ଆମେ ଅନୁସନ୍ଧାନ କରୁ କରୁ ଯାହା ଫଳ ମିଳିବ । ତେବେ ମୋର ବିଶ୍ୱାସ ଅପରାଧୀ ଏ ହତ୍ୟା ପ୍ରବୃତ୍ତି କରୁନ । କାରଣ ପୂର୍ବରୁ ଯେତେଥର ସେ ଟଙ୍କା ହରଣଚୋରି କରିଛି, ସମସ୍ତଙ୍କ ଆଖି ଆଗରେ ନେଇ ଯାଇଛି, କାହାକୁ ହତ୍ୟା କରିନ କି କାହାକୁ ବାନ୍ଧି ପକେଇନ । ଦେଖାଯାଉ ଏ ଦୁଇଜଣ ଅପରାଧୀ କିଏ ।

ଏହା ଭିତରେ କୋଡିଏ ଦିନ ଅତୀତ ହୋଇ ଯାଇଛି । ଅପରାଧୀ ଆଜି ଗୋଟିଏ ବଡ ଧରଣର ଚୋରି କରିବ ବୋଲି ଏସ୍.ପି ସାହେବଙ୍କ ପାଖକୁ ଚିଠି ଦେଇଛି ! ଏହି ମାସ ଦଶ ତାରିଖ ରାତି ବାରଟା ବେଳେ ଜୋବ୍ରା ନିକଟରେ ଥିବା ଜମିଦାର ଚନ୍ଦ୍ରକାନ୍ତ ବାବୁଙ୍କ ଘରୁ ସମସ୍ତ ଟଙ୍କା, ସୁନା ଚୋରି କରିବ । ଖଣ୍ଡିଏ ଚିଠି ଏସ୍.ପି ସାହେବଙ୍କ ପାଖକୁ, ଆଉ ଖଣ୍ଡିଏ ଚିଠି ଜମିଦାର ଚନ୍ଦ୍ରକାନ୍ତ ବାବୁଙ୍କ ନିକଟକୁ ଆସିଛି । ଚିଠି ପାଇ ଜମିଦାର ବଣ ଶିହରି ଉଠିଲେଣି । କଟକ ସହର ବାସୀ ନିଜ ଜୀବନ ପ୍ରତି ଅତଙ୍କ ମଣିଲେଣି । ପୋଲିସମାନେ ଅନୁସନ୍ଧାନ ପ୍ରତି ସଜାଗ ହୋଇ ଉଠିଲେଣି । ଦଶ ତାରିଖ ଆଉ ପାଞ୍ଚଦିନ ରହିଲା । ଉପରେ ଏହି ପାଞ୍ଚଟି ଦିନ ପାଞ୍ଚଟି ମୁହୂର୍ତ୍ତ ପରି କଟିଯିବ ।

ପାଞ୍ଚ ଦିନ ପରେ ଆସି ପହଞ୍ଚିଲା । ସେହି ଉଜାଗର ରଜନୀ । ଦଶ ତାରିଖ ଦିନ ସଂନ୍ଧ୍ୟା ଛଅଟା ବେଳୁ ଚନ୍ଦ୍ରକାନ୍ତ ବାବୁଙ୍କ କୋଠାଟିର ଚତୁଃପାର୍ଶ୍ୱ ସଶସ୍ତ୍ର ପୋଲିସ ଘେରି ରହିଛନ୍ତି ।

Digitized by srujanika@gmail.com

କୋଠାଟି ବନ୍ଧୁକ ଧୂଆଁରେ ଧୂଷରିତ ହୋଇ ଗଲାଣି । ତଥାପି କୋଠାଟିରେ ନୂଆରଙ୍ଗ ଦିଆ ହୋଇ ନୂଆ କୋଠା ପରି ଦିଶୁଛି ।

ଚନ୍ଦ୍ରକାନ୍ତ ବାବୁଙ୍କ ଘରେ ଆଜି ସମସ୍ତେ ସଂଧ୍ୟା ଛଅଟା ବେଳୁ ରାତ୍ରିର ଖାଇବା କାମ ସାରି ଦେଲେଣି । ସମସ୍ତେ ଦୁଇମହଲା ଉପରକୁ ଚାଲି ଗଲେଣି । ଚନ୍ଦ୍ରକାନ୍ତ ବାବୁ ଉପରେଥିବା ନିଜ ଶୋଇଲାଘର ଭିତରେ ଗୋଟିଏ ଆରାମ ଚେୟାରରେ ବସି ରହିଥାନ୍ତି । ମନରେ ତାଙ୍କର ଭୟର କଳା ମେଘ ଘେରି ରହିଛି । ପୋଲିସ ଦଳ ଘରର ଚାରି ପାଖରେ ସତର୍କ ପହରା ଦେଇ ଜଗି ରହିଛନ୍ତି । ଘରଟି ନିସ୍ତବ୍ଧ । ସଶସ୍ତ୍ର ପୋଲିସ ଅପଲକ ନୟନରେ ଚାହିଁ ରହିଛନ୍ତି । ବହୁରୂପୀ ଅପରାଧୀର ଆଗମନକୁ ... ... ... ... ... ...

ଘଣ୍ଟା କଣ୍ଟା ଟିକ୍ ଟିକ୍ ଶବ୍ଦ କରି ଆଗକୁ ଆଗକୁ ମାଡ଼ି ଚାଲିଛି । ଠନ୍ ଠନ୍ ହୋଇ ଘଣ୍ଟାରେ ଦଶଟା ବାଜିଲା । ହଠାତ୍ ଅମାବାସ୍ୟାର ଅନ୍ଧକାର ଘନୀଭୂତ ହୋଇ କଟକ ସହରକୁ ଘନ ଅନ୍ଧକାରରେ ଆଚ୍ଛନ୍ନ କରିଦେଲା । ସହରର ସମସ୍ତ ବିଜୁଳି ଯୋଗାଣ ବନ୍ଦ ହୋଇଗଲା ।ପୋଲିସ ଦଳ ଏ ଅନ୍ଧକାର ଦେଖି ନିଜ ଜୀବନକୁ ବିପନ୍ନ ମଣିଲେ । ସହରବାସୀ ଭୟରେ ଥରି ଉଠିଲେ । ଚନ୍ଦ୍ରକାନ୍ତ ବାବୁଙ୍କ ଘରର ସମସ୍ତେ ନିର୍ଜୀବ ପରି ପଡ଼ି ରହିଲେ । କେତୋଟି ପେଟ୍ରୋମାକ୍ସ ଲାଇଟ୍ ଏ ଅନ୍ଧକାରକୁ ଅଳ୍ପ ଆଲୋକିତ କରୁଥାଏ । ପୋଲିସଙ୍କ ପ୍ରହରାରେ ବିରାଡ଼ି ଛୁଆ-ଟିଏବି ଚନ୍ଦ୍ରକାନ୍ତ ବାବୁଙ୍କ ଘରକୁ ପଶିଯିବାର ଉପାୟ ନାହିଁ । ଆଉ ଅପରାଧୀ ବା କିପରି ଚଂଦ୍ରକାନ୍ତ ବାବୁଙ୍କ ଘରକୁ ପଶିବ ।

Digitized by srujanika@gmail.com

ଏସ୍.ପି ସାହେବ ଚନ୍ଦ୍ରକାନ୍ତ ବାବୁଙ୍କ ପାଖକୁ ଫୋନ କରୁଥାନ୍ତି । କଣ ଦୁର୍ଘଟଣା ଘଟିଛି କ ନାହିଁ ଜାଣିବାକୁ । ଚନ୍ଦ୍ରକାନ୍ତ ବାବୁ ଭୟଭୀତ ଉତ୍ତର ଦଉଥାନ୍ତି ଅପରାଧୀ ଦେଇଥିବା ସମୟତ ଗଡ଼ି ଯାଇନ । ମୋର ବଡ଼ ଭୟ ହେଉଛି । ସମସ୍ତଙ୍କ ଆଖିରେ ଧୂଳି ଦେଇ ଯଦି ଅପରାଧୀ ପଳେଇଯିବ, ମୁଁ କଣ କରିବି । ବର୍ତ୍ତମାନ ଠାରୁ ଯେଉଁ ଘନ ଅନ୍ଧକାର ସୃଷ୍ଟି ହେଲାଣି ସେ ଅନ୍ଧକାରକୁ ଦେଖି ଭୟରେ ମୋ ଛାତି ଥରି ଉଠୁଛି ।

"ଆପଣ ଏତେ ଭୟଭୀତ ହୁଅନ୍ତୁନ । ଥକ ଅପରାଧୀ ଆମ ଆଖିରେ ଧୂଳି ଦେଇ ପାରିବନି । ତା ନିଜ ଜୀବନକୁ ତ ପୁଣି ଭୟ ଅଛି । ଆପଣ ଧୈର୍ଯ୍ୟ ଧରନ୍ତୁ । ଯଦି କିଛି ଅସୁବିଧା ହୁଏ, ତେବେ ମୋ ପାଖକୁ ଫୋନ୍ କରିବେ । ଆପଣଙ୍କ ଫୋନ୍‌କୁ ମୁଁ ଚାହିଁ ବସିଛି ।"

"ହଁ, ଆପଣମାନଙ୍କ ଭରସାରେତ ମୁଁ ଏଠାରେ ଧୈର୍ଯ୍ୟ ଧରି ବସି ରହିଛି । ଯାହା ଭଗବାନଙ୍କର ବିଚାର ଥିବ । ହଉ ଫୋନ୍ ରଖୁଛି ।"

ଥାନା ଘଣ୍ଟାରେ ଠନ୍ ଠନ୍ ହୋଇ ବାଜିଲା ଗୋଟାଏ । ସମସ୍ତେ ଅସ୍ଥିର ହୋଇ ଉଠିଲେ । ଯାହାହେଉ ଅପରାଧୀ ଦେଇଥିବା ସମୟ ଗଡ଼ିଗଲାଣି । ବୋଧହୁଏ ଆଜି ଆଉ ଅପରାଧୀ ଆସିବନି । ଏ ପୋଲିସ ପ୍ରହରୀ ଦେଖି ଡରିଗଲା । ଏସ୍. ପି. ସାହେବଙ୍କୁ ଫୋନ୍ କରି ଜଣାଇଲେ ଚନ୍ଦ୍ରକାନ୍ତ ବାବୁ— ଅଶୁଭ ମୁହୂର୍ତ୍ତଟି ନିର୍ବିଘ୍ନରେ କଟି ଯାଇଛି । ତଥାପି ଆଜି ରାତି ନପାହିବା ଯାଏ କିଛି କହି ହେବନି ।

Digitized by srujanika@gmail.com

ଫୋନ୍‌ରେ ଉତ୍ତର ଦେଲେ ଏସ୍. ପି. ସାହେବ, ଆପଣ ନିଶ୍ଚିନ୍ତ ରହନ୍ତୁ । ପୋଲିସ କାଲି ସକାଳ ସାତଟା ପର୍ଯ୍ୟନ୍ତ ଦେଶ୍ବାପରେ ପହରା ଦେଉଥିବେ । ଆପଣ ଟିକିଏ ବିଶ୍ରାମ ନିଅନ୍ତୁ । ହଁ ମୁଁ ରହୁଛି । ଶୁଭରାତ୍ରି ।"

ଘଣ୍ଟାରେ ଦୁଇଟା ବାଜିଲା । କଟକ ସହର ପୁଣି ଆଲୋକ-ମାଳାରେ ହସି ଉଠିଲା । ବିଜୁଳିବତୀର ତୀବ୍ର ଆଲୋକରେ ଲୁଚିଗଲା ଗଭୀର ରାତିର ଘନ ଅନ୍ଧକାର । ଏସ୍. ପି. ସାହେବ ନିଜ ଶୋଇବା ଘରେ ଗୋଟିଏ ଆରାମ ଚେୟାରରେ ଅର୍ଦ୍ଧଶାୟିତ ଅବସ୍ଥାରେ ଶୋଇରହି ନିଜକୁ ବଡ଼ ନିଶ୍ଚିନ୍ତ ମନେ କରୁ ଥାଆନ୍ତି । ଯାହାହେଉ ଅପରାଧୀ ଥରେ ପୋଲିସ-ପହରା ଦେଖି ଭୟ କରୁଛି ! ପୋଲିସ ପହରାକୁ ଯଦି ତାର ଭୟ ନଥାନ୍ତା, ତେବେ ସେ ନିଶ୍ଚୟ ଆଜି ଚନ୍ଦ୍ରକାନ୍ତ ବାବୁଙ୍କ ଘରୁ ଚୋରି କରିଥାନ୍ତା । ଅପରାଧୀ ଆଜି ତା କଥା ରଖି ପାରିନି । ଏହା ଭାବି ମନେ ମନେ ହସୁଥାନ୍ତି ଏସ୍. ପି. ସାହେବ । ତାଙ୍କ ଭାବନାରେ ବାଧା ଦେଇ ଟେଲିଫୋନ୍‌ଟି କିଁ କିଁ ହୋଇ ବାଜି ଉଠିଲା । ଏସ୍. ପି. ସାହେବ ରିସିଭରଟି ଉଠାଇ ପଚାରିଲେ "ହ୍ୱାଲୋ"



ଏସ୍.ପି. ସାହେବଙ୍କ କପାଳର ରେଖାଗୁଡ଼ିକ କୁଞ୍ଚିତ ହୋଇ ଉଠିଲା । ସେ ଫୋନ୍ ରିସିଭରଟିକୁ ରଖିଦେଇ ନିଜ ପିସ୍ତଲ ଓ ବଡ଼ ଟର୍ଚ୍ଚ ଲାଇଟଟିକୁ ଧରି ଆଗେଇ ଚାଲିଲେ ନିଜ ଘରର ସାମନା ଗେଟ୍ ପାଖକୁ । ଗେଟ୍ ପାଖରେ ଥିବା ନଜର

Digitized by srujanika@gmail.com

ନେମ୍ ପ୍ଲେଟ୍ ଦେହରେ ଗୋଟିଏ ବଡ଼ ସୂଚ ଓ ଚିଣ୍ଠିଏ ଚିଠି ରଖା ଯାଇଛି । ଚଟ ଚଟ କରି ସୂଚ ଓ ଚିଠିଟି ନେଇ ନିଜ ଘର ବାରଣ୍ଡା ଉପରକୁ ଉଠିଆସିଲେ । ଟର୍ଚ୍ଚ ଆଲୁଅକୁ ଜାଳି ଚିଠିଟିକୁ ପଢ଼ିବାକୁ ଲାଗିଲେ । ଲେଖା ଅଛି—

ପ୍ରିୟ ଏସ୍. ପି. ସାହେବ,

ଏ ରାତି ଅଧଟାରେ ଆପଣଙ୍କୁ ହଇରାଣ କରୁଛି । କର୍ତ୍ତବ୍ୟ ଦୃଷ୍ଟିରୁ ହଇରାଣ କରୁଛି ନୁହେଁ । ଯାହା ହେଉ ଆପଣଙ୍କୁ କଥା ଦେଇଥିଲି ଦସ୍ୟୁ ଅପରାଧୀକୁ ଧରାଇ ଦେବି ବୋଲି ଆଜି ମୁଁ ମୋ କଥା ରଖି ପାରୁଛି ।

ଆଜି ରାତି ବାରଟାରେ ଚନ୍ଦ୍ରକାନ୍ତ ବାବୁଙ୍କ ଘରୁ ଲୁଣ୍ଠନ କରିବେ ବୋଲି ଯେଉଁ ଦସ୍ୟୁଦଳ ଆପଣଙ୍କ ପାଖକୁ ଚିଠି ଦେଇଥିଲେ, ସେମାନେ ଆଜି ମୋ ହାତରେ ବନ୍ଦୀ । ସେମାନେ ଠିକ୍ ସମୟରେ ଲୁଣ୍ଠନ କରି ଚାଲି ଯାଇଥାନ୍ତେ, ଯଦି ସେମାନଙ୍କୁ ମୁଁ ଧରିବାକୁ ଚେଷ୍ଟା କରି ନଥାନ୍ତି । କାଲି ସମସ୍ତେ ଜାଣିଥାନ୍ତେ ଯେ ପୋଲିସର ଅପାରଗତା ଯୋଗୁଁ ଥରକୁ ଥର ଏପରି ଲୁଣ୍ଠନ ହୋଇ ଯାଉଛି । କିନ୍ତୁ ମୋ ନାଁରେ ଏ ଅପବାଦ, କଳଙ୍କ ମୁଁ ସହି ପାରିବିନି । ସେଥିପାଇଁ ଦୀର୍ଘ ଦିନ ଧରି ମୋର ଅନୁସନ୍ଧାନ ଚକ୍ଷୁ ଦୁଇଟି ଦସ୍ୟୁ ଦଳ ପଛେ ପଛେ ଘୂରି ବୁଲୁଥିଲା । ଏମାନେ ଗୋଟିଏ ବଡ଼ ଡକାଏତ ଦଳ । ଆଜିପର୍ଯ୍ୟନ୍ତ ଯେତେଟି ନରହତ୍ୟା, ଲୁଣ୍ଠନ ପ୍ରଭୃତି ହୋଇଛି, ସବୁ ଏହିମାନଙ୍କର କାମ ।

Digitized by srujanika@gmail.com

ସେମାନଙ୍କୁ ଦସ୍ୟୁଦଳ ବୋଲି କପରି ଠାବ କଲି ଓ କପରି ବନ୍ଦୀ କଲି ସେ ସମସ୍ତ ଆପଣଙ୍କୁ କହି ଦେଉଛି ।

ଯେଉଁଦିନ ଠାରୁ ଦସ୍ୟୁଦଳ ଚିଠି ଦେଲେଣି ଚନ୍ଦ୍ରକାନ୍ତ ବାବୁଙ୍କ ଘରୁ ଚୋରି କରିବେ ବୋଲି, ସେହିଦିନଠାରୁ ଚନ୍ଦ୍ରକାନ୍ତ ବାବୁଙ୍କ ଘର ଉପରେ ତୀକ୍ଷ୍ଣ ଦୃଷ୍ଟି ଥାଏ । ପ୍ରତିଦିନ ସନ୍ଧ୍ୟାବେଳେ ମୁଁ ବିଭିନ୍ନ ବେଶରେ ଆସି ଚନ୍ଦ୍ରକାନ୍ତ ବାବୁଙ୍କ ଘରର ଅଳ୍ପ ଦୂରରେ ଠିଆ ହୁଏ । ଦିନେ ଦେଖିବାକୁ ପାଇଲି ଚନ୍ଦ୍ରକାନ୍ତ ବାବୁଙ୍କ ଚାକର ସନ୍ଧ୍ୟା ପରେ ବାହାରକୁ ଆସିଲା । ତାହା ଉପରକୁ ସତର୍କ ଦୃଷ୍ଟି ରଖି ଗୋଟିଏ ରିକ୍‌ସାବାଲା ସହିତ ଘଣ୍ଟାଏ ଧରି ଭଣ କଥାବାର୍ତ୍ତା ହେଲା । କଥାବାର୍ତ୍ତା ସରିବାରୁ ରିକ୍‌ସାବାଲାଟି ଚାଲିଗଲା ଓ ଚାକରଟି ଚନ୍ଦ୍ରକାନ୍ତବାବୁଙ୍କ ଘର ଭିତରକୁ ଚାଲିଗଲା । ତା ପରଦିନ ସଂନ୍ଧ୍ୟା ସମୟରେ ଦେଖିଲି ଚନ୍ଦ୍ରକାନ୍ତ ବାବୁଙ୍କ ଚାକରଟି ବାହାରକୁ ଆସି ଗୋଟିଏ ଭିକାରି ସହିତ ଘଣ୍ଟାଏ କାଳ କଥାବାର୍ତ୍ତା ହେଲା । ଏହା ଦେଖି ମୋର ବଡ଼ ସନ୍ଦେହ ହେଲା । ତେଣୁ ସେ ଭିକାରି କଥାବାର୍ତ୍ତା ହୋଇସାରି ଫେରିଯିବା ବେଳେ ମୁଁ ତା ପଛେ ପଛେ ଗଲି ।

ସେ ଭିକାରିଟି ଯାଉଥାଏ, ମୁଁ ତାକୁ ଅନୁସରଣ କରୁଥାଏ । କିଛିବାଟ ଯିବା ପରେ ଦେଖିଲି, ସେ ଭିକାରିଟି ଗୋଟିଏ ମଠର ଗ୍ୟାରେଜ ଭିତରକୁ ଗଲା । ମୁଁ ଭିତରକୁ ନଯାଇ ବାହାରେ ଗୋଟିଏ ପାଚେରୀ ଉହାଡରେ ଲୁଚି ରହିଲି । ଦେଖିଲି ଅଳ୍ପ ସମୟ ପରେ ସେ ଭିକାରିଟି ଗୋଟିଏ ଭଦ୍ରଲୋକର ପୋଷାକ ପିନ୍ଧି ବାହାରକୁ ଅସିଲା ।

Digitized by srujanika@gmail.com

ଟିଙ୍କଥାଏ ଗୋଟିଏ ବାଦାମୀ ରଙ୍ଗର ସୁଟ୍, ପାଦରେ ଆମ୍ବା-
ଷାଡ଼ର ବୁଟ୍, ମୁହଁରେ ସିଗାରେଟ୍ । ଏ ସେ ଅଳ୍ପ ସମୟ
ପୂର୍ବରୁ ଭିକାରୀ ହୋଇଥିଲା ଏହା କେହି କଳ୍ପନା ବି କରି
ପାରିବେନି । ସେ ଗ୍ୟାରେଜଟିର କବାଟ ବଂଦ କରି ଆସ୍ତେ
ଆଗକୁ ଯିବାକୁ ଅଗ୍ରସର ହେଲା । ସେ ଅଳ୍ପବାଟ ଯିବା ପରେ
ମୁଁ ତା ପିଛା ଧରିଲି ।

ସେ ଲୋକଟି କାଠଯୋଡ଼ୀ କୂଳର ଗୋଟିଏ ନିର୍ଜନ
ସ୍ଥାନକୁ ଗଲା । ସେତେବେଳକୁ ରାତି ହୋଇଗଲାଣି । ଚାରି-
ଆଡ଼କୁ ଦୃଷ୍ଟି ରଖି ଅତ୍ୟନ୍ତ ଅଗକୁ ଚାଲିଲା ! ମୁଁ ଗଛ ଉହାଡ଼େ,
ଉହାଡ଼େ ତା ପଛେ ପଛେ ଯାଉଥାଏ । ଅଳ୍ପବାଟ ଯାଇଛି
କେତେଗୁଡ଼ିଏ ଲୋକଙ୍କ କଥାବାର୍ତ୍ତା ମୁଁ ଶୁଣିବାକୁ ପାଇଲି ।
ଆଉ ଆଗକୁ ଅଗ୍ରସର ନହୋଇ ସେମାନଙ୍କଠାରୁ ଅଳ୍ପ
ଦୂରରେ ଗୋଟିଏ ବାଲିକୂଦ ଉପରେ ପେଟେଇ ଶୋଇରହି
ସେମାନଙ୍କ କଥାବାର୍ତ୍ତା ଶୁଣିବାକୁ ଲାଗିଲି । ପ୍ରାୟ ଛଅ ସାତଜଣ
ଲୋକ ଏ ଲୋକଟିର ଅପେକ୍ଷାରେ ଥିଲେ । ସେମାନଙ୍କ ଭିତରୁ
ଜଣେ ଏ ଲୋକଟିକୁ କହିଲା, "କଣ ସବୁ ଠିକ୍ କଲୁ ?"

ଏ ଲୋକଟି ଉତ୍ତର ଦେଲା, "ସବୁ ଠିକ୍ କରି ଆସିଛି ।
ସେ ଏ କୋଠାରୁ ଆରପଟ କୋଠାକୁ ଗୋଟିଏ ସରୁ ଦଉଡ଼
ବାନ୍ଧି ଦେଇଥିବ । ଚନ୍ଦ୍ରକାନ୍ତ ବାବୁଙ୍କ ଶୋଇବା ଘରକୁ
ଲାଗିଥିବା ଗୁପ୍ତ କୋଠରୀ ଛାତ ଉପରେ ଗୋଟିଏ କଣା କରିଥିବ
ସେ ଛାତଟି ଅନ୍ୟ ଛାତ ତୁଳନାରେ ବହୁତ ନିଚା । ତେଣୁ
କଣାଟି ମୋଟା ଜଣା ପଡ଼ିବନି । ଆମକୁ ମଧ୍ୟ ଭିତରକୁ ଯିବାକୁ

Digitized by srujanika@gmail.com

ବହୁତ ସୁବିଧା ହେବ । ଜଣା କରିବା ପାଇଁ କ୍ଷିନ୍ତପଡ୍ର ମୁଁ ତାଙ୍କୁ ଦେଇ ଆସିଛି । କିନ୍ତୁ ଆଜି ଗୋଟିଏ କଥା ଦେଖିବା ଦରକାର ଦର୍କାର ।"

" ଆଜି ଫେର କି କଥା ? "

"ସେ ଦିନ ଯଦି ବିଜୁଳି ବତ୍ତି ସବୁ ଜଳୁଥିବ ତେବେ ଆମେ ତ କିଛି କରିପାରିବାନି । ସବୁ ଉଦ୍ଦେଶ୍ୟ ଆମର ଭୁଲ ଭାଲ ହୋଇଯିବ । "

"ହଁ ଠିକ୍ କଥାତ ।"

ଗୋଟାଏ କାମ ଆମକୁ କରିବାକୁ ପଡ଼ିବ । ଆମ ଭିତରୁ ଜଣେ ସନ୍ଧ୍ୟାବେଳକୁ ଗୃହବାଟିଆ ଚାଲିଯିବ । ସେଠାରେ ସେ ସନ୍ଧ୍ୟା ସମୟରୁ ଲୁଚି ରହିଥିବ । ଗୃହବାଟିଆ ଜାଗାଟି ବେଶ ଜଙ୍ଗଲ ଜାଗା, କେହି ଦେଖି ପାରିବେନି । ଠିକ୍ ସାତ ଘଣ୍ଟା ବେଳେ ସେ ସେଠାରୁ ଲାଇନ୍‌ଟିକୁ ସଟ୍ କରି ଦେବ । ତାପରେ ଅଜି କିଏ କି କାମ କରିବ ନିଜ ନିଜ ଭିତରେ ବାଣ୍ଟି ନେଲେ । ଅଳ୍ପ ସମୟ ଆଜି କିଛି କଥାବାର୍ତ୍ତା ହୋଇ ସେମାନେ କାଠଯୋଡ଼ି କାଲଭର୍ଟରୁ ସହର ଭିତରକୁ ଯିବାକୁ ଲାଗିଲେ । ସେମାନେ ସେଠା ଛାଡ଼ି ଚାଲିଯିବା ପରେ ମୁଁ ମୋ କାମରେ ଯିବାକୁ ଲାଗିଲି । ମୋ ମନ ଖୁସି ହେଉଥାଏ ଯାହାହେଉ ଏମାନଙ୍କ ଆଡ୍ଡା ଜାଗାଟି ଜାଣି ପାରିଲି ।

Digitized by srujanika@gmail.com

ଆଜ ଗତ ବାରଟା ବେଳେ ଚନ୍ଦ୍ରକାନ୍ତ ବାବୁଙ୍କ ଘରୁ ଗ୍ରେଫ୍ତ ହେବାର ଠିକ୍ ହୋଇଥିଲା । ମୁଁ ସନ୍ଧ୍ୟା ପୂର୍ବରୁ ସେମାନେ ରହୁଥିବା ମଣ୍ଟଗମ୍ୟାରେଜ ପାଖରେ ଲୁଚି ବସିଥିଲି । ସେମାନଙ୍କ ଭିତରୁ ଜଣେ ଦସ୍ୟୁଙ୍କୁ ଅନ୍ଧାର ଯାଗା ଦେଖି ଅଚେତ କରିଦେଲି । ସେ ଦସ୍ୟୁଟି ଅଚେତ ହୋଇଯିବା ପରେ ତା ପୋଷାକ ମୁଁ ପିନ୍ଧି ପକାଇ ଆସି ଦସ୍ୟୁ ଦଳରେ ମିଶିଗଲି । ସେ ଦସ୍ୟୁଟିକୁ ଏପରି ଔଷଧ ଦେଇ ଅଚେତ କରିଥିଲି ତାର ଚେତା ଫେରି ଆସିଲେ ମଧ୍ୟ ଦଶ-ଘଣ୍ଟା ପର୍ଯ୍ୟନ୍ତ ସେ ଉଠି ପାରିବନି ।

ଦସ୍ୟୁ ଦଳଙ୍କ ମୁଖା ଓ ପୋଷାକ ପିନ୍ଧିଥିବାରୁ ଦସ୍ୟୁ ଦଳର ଲୋକ ମତେ ଚିହ୍ନିବାର ଉପାୟ ନଥିଲା । ଗତ ଦଶଟା ବେଳେ ଦସ୍ୟୁ ଦଳର ଯୋଜନା ଅନୁଯାୟୀ ସାରା ସହର ଅନ୍ଧକାର ହୋଇଗଲା । ସବୁ ସ୍ଥାନରେ ବିଜୁଳି ଯୋଗାଣ ବନ୍ଦ । ଅନ୍ଧାର ହେବା ପରେ ଦସ୍ୟୁ ଦଳ ଚନ୍ଦ୍ରକାନ୍ତ ବାବୁଙ୍କର ପଡ଼ୋଶୀ ଜୟନ୍ତବାବୁଙ୍କ ବଗିଚା ଭିତରକୁ ପଶିଗଲେ । ବଗିଚାରୁ ଫାଶି ଲଇନ ସାହାଯ୍ୟରେ ଜୟନ୍ତ ବାବୁଙ୍କ ଛାତ ଉପରକୁ ଉଠିଗଲେ । ଜୟନ୍ତ ବାବୁ ଛାତ ଉପରୁ ଚନ୍ଦ୍ରକାନ୍ତ ବାବୁଙ୍କ ଛାତ ଉପରକୁ ଗୋଟିଏ ଦଉଡ଼ି ଗଛରେ ଆଗରୁ ବାନ୍ଧି ରଖିଥିଲା । ସେହି ଦୋଉଡ଼ି ସାହାଯ୍ୟରେ ଚନ୍ଦ୍ରକାନ୍ତ ବାବୁଙ୍କ ଛାତ ଉପରକୁ ଆମେ ସମସ୍ତେ ଆସିଲୁ । ସେ ଦୋଉଡ଼ିଟିକୁ ଲୋକମାନେ ଆଗରୁ ଦେଖିଥିଲେ । କିନ୍ତୁ ସେମାନେ ସେଇଟିକୁ ଦୋଉଡ଼ି ବୋଲି ନଭାବି ବିଜୁଳି ତାର ବୋଲି ଭାବିଥିଲେ ।

ଚନ୍ଦ୍ରକାନ୍ତ ବାବୁଙ୍କର ଗୁପ୍ତ ଘରର ଛାତ ଉପରେ କଣାଟି ସେ ଲୁକର ଆଗରୁ କରିଥିଲା । ମେ କଣାରେ ଦୋଉଡ଼ି ପିଛ

ଗୁପ୍ତ ଘର ଭିତରକୁ ଚାଲିଗଲେ । ସେମାନେ ଦିଲ୍ଲୀ ସାହାଯ୍ୟରେ ସମସ୍ତେ ଚନ୍ଦ୍ରକାନ୍ତ ବାବୁଙ୍କ ସେ ଗୁପ୍ତ ଘର ଭିତରେ ପହଞ୍ଚିଲେ । ସେତେବେଳକୁ ରାତି ଏଗାରଟା ବାଜିଥାଏ ।

ଆପଣ ବା ବାହାରର ଲୋକ, କେହି ଚନ୍ଦ୍ରକାନ୍ତ ବାବୁଙ୍କର ସେ ଗୁପ୍ତ ଘରଟି ଦେଖି ନାହାନ୍ତି । ବାହାରୁ ମୋଟେ ଜଣା ପଡ଼େନି ଚନ୍ଦ୍ରକାନ୍ତବାବୁଙ୍କ ଶୋଇବା ଘରକୁ ଲାଗି ଗୋଟିଏ ଗୁପ୍ତ କୋଠରୀ ଅଛି ବୋଲି । ଚନ୍ଦ୍ରକାନ୍ତ ବାବୁଙ୍କ ଶୋଇବା ଘର ବାଁ ପଟେ ଯେଉଁ ବଡ଼ କାନ୍ଥ ଆଲମିରାଟି ଅଛି, ସେଇଟି ପ୍ରକୃତରେ ଆଲମିରା ନୁହେଁ । ସେଇଟି ତାଙ୍କ ଗୁପ୍ତ ଘରର କବାଟ । ସେ, ଆଲମିରା କବାଟଟି ଖୋଲିଦେଲେ ଗୁପ୍ତ ଘର ଭିତରକୁ ରାସ୍ତା । ସେ ଗୁପ୍ତଘର ଭିତରେ କଣ ଅଛି ଜାଣନ୍ତି ? ବେଆଇନ ଅଫିମ, ଭାଙ୍ଗ, ସୁନା ପ୍ରଭୃତି ଅଛି । ଏଥିରୁ ସ୍ପଷ୍ଟ ଜଣା ପଡ଼ୁଛି ଯେ ଚନ୍ଦ୍ରକାନ୍ତ ବାବୁ ଜଣେ ବେଆଇନ ବ୍ୟବସାୟୀ । ସେଥିପାଇଁ ସେ ଘରଟିକୁ ଚନ୍ଦ୍ରକାନ୍ତ ବାବୁ ସମସ୍ତଙ୍କ ଚକ୍ଷୁ ଅନ୍ତରାଳରେ ରଖିଛନ୍ତି । କାରଣ, ଯଦି କାହାର ଗୁପ୍ତଘର ଉପରେ ନଜର ପଡ଼ିବ ତେବେ ସେ ଧରା ହେବେ । ସେଥିପାଇଁ ଆପଣଙ୍କୁ ତାଙ୍କର ସମସ୍ତ ଘର ଦେଖାଇଥିଲେ, କିନ୍ତୁ ଏ ଘରଟି ଦେଖାଇ ନାହାନ୍ତି ।

ମୁଁ ଯଦି ନଥାନ୍ତି, ତେବେ ଦସ୍ୟୁମାନେ ଠିକ୍ ରାତି ବାରଟାବେଳେ ଗୁପ୍ତ କବାଟ ଭାଙ୍ଗି ଚନ୍ଦ୍ରକାନ୍ତ ବାବୁଙ୍କ ଶୋଇବା ଘର ଭିତରେ ପଶିଥାଆନ୍ତେ । ତା ପରେ ଚନ୍ଦ୍ରକାନ୍ତ ବାବୁଙ୍କୁ ହତ୍ୟା କରି ତାଙ୍କର ସମସ୍ତ ଧନ, ସମ୍ପତ୍ତି ଲୁଟ୍ କରି

Digitized by srujanika@gmail.com

ନେଇ ଯାଇଥାନ୍ତେ । ଆପଣମାନେ କିଛି କରିପାରି ନଥାନ୍ତେ । କିନ୍ତୁ ମୁଁ ଏ ସବୁକୁ ଓଲଟ ପାଲଟ କରି ଦେଇଛି ।

ରାତି ବାରଟା ବାଜିବା ପୂର୍ବରୁ ସମସ୍ତ ଦସ୍ୟୁ ଦଳକୁ ମୁଁ ଅଚେତ କରି ଦେଲି । ଚନ୍ଦ୍ରକାନ୍ତ ବାବୁଙ୍କ ଗୃହବନ୍ଦିକୁ ଅଚେତ କରି ବସାଇ ଦେଇଛି । ସେମାନେ ଖସିଯିବାର ଉପାୟ ନାହିଁ । ସେମାନଙ୍କର ଚେତା ଆସୁ ଆସୁ ଆହୁରି ଚାରି ଛଅଘଣ୍ଟା ସମୟ ଲାଗିବ । ଆପଣ ଏ ଚିଠି ପାଇ ଶୀଘ୍ର ଆସନ୍ତୁ । ଚନ୍ଦ୍ରକାନ୍ତ ବାବୁଙ୍କ ଶୋଇଲା ଘରେ ଆଲମିରା ଖୋଲି ସେହି ରାସ୍ତାରେ ଗୁପ୍ତ ଘରକୁ ଆସନ୍ତୁ । ସେଠାରେ ଦସ୍ୟୁଗୁଡ଼ାକ ଅଚେତହୋଇ ପଡ଼ିଛନ୍ତି, ଆପଣ ସେମାନଙ୍କୁ ନିର୍ବିଘ୍ନରେ ବନ୍ଦୀ କରନ୍ତୁ । ତା ସହିତ ଚନ୍ଦ୍ରକାନ୍ତ ବାବୁଙ୍କ ଗୁପ୍ତଘରେ ଥିବା ସମସ୍ତ ଜିନିଷ ସିଜ୍ କରିନିଅନ୍ତୁ । ଚନ୍ଦ୍ରକାନ୍ତ ବାବୁଙ୍କୁ ମଧ୍ୟ ଗିରଫ କରିବାକୁ ଭୁଲିବେନି । ଏମାନେ ହେଲେ ସମାଜର ବଡ଼ ଶତ୍ରୁ ।

ତା ପରେ ଆପଣ ଜୋଡ଼ା ନିକଟରେ ଥିବା ଶ୍ରୀକାନ୍ତ ବାବୁଙ୍କ ପୁରୁଣା କୋଠା ପାଖକୁ ଆସନ୍ତୁ । ସେଠାରେ ଗୋଟିଏ ମଟର ଗ୍ୟାରେଜ ଅଛି । ସେ ଗ୍ୟାରେଜ ଭିତରେ ଦସ୍ୟୁମାନଙ୍କର ଯାହା ଜିନିଷ ପତ୍ର ଅଛି, ତାକୁ ସିଜ୍ କରନ୍ତୁ । ଏ ଯେଉଁ ଗୃହଟି ଦେଖିଲ, ସେଇଟି ହେଉଛି ମଟର ଗ୍ୟାରେଜ ଗୃହ । ଚନ୍ଦ୍ରକାନ୍ତ ବାବୁଙ୍କ ଶୋଇବା ଘର ଆଲମିରା ଗୃହ, ଚନ୍ଦ୍ରକାନ୍ତ ବାବୁଙ୍କ ମୁଣ୍ଡତଳ ତକିଆ ତଳେ ଅଛି, ସେହି ଗୃହରେ ଆଲମିରା ଖୋଲି ଗୁପ୍ତ ଘରକୁ ଆସିବେ । ହଁ ଆଉ ଗୋଟିଏ କଥା । ଶ୍ରୀକାନ୍ତ ବାବୁଙ୍କ ମଟର ଗ୍ୟାରେଜ ପଛପଟେ ଯେଉଁ ଦସ୍ୟୁଟିକୁ

Digitized by srujanika@gmail.com

ମୁଁ ଅତେଚ କରାଇ ତା ପୋଷାକ ପିନ୍ଧିଥିଲି, ସେ ବସ୍ତ୍ରଟି ସେ ଗ୍ୟାରେଜ ପଛପଟରେ ସେତ୍ତଭଳ ପଡ଼ି ରହିଛି । ତାକୁ ମଧ୍ୟ ଗିରଫ କରନ୍ତୁ । ଡେରି ନ କରି ଶୀଘ୍ର ଆସନ୍ତୁ । ଇତି ।

ଆପଣଙ୍କର

ପ୍ରକୃତ ଅପରାଧୀ ।

ଏସ୍.ପି. ସାହେବ ଚିଠିଟିକୁ ଓ ଋବିଟିକୁ ପକେଟରେ ରଖି ନିଜ ଗ୍ୟାରେଜ ଅଭିମୁଖେ ଅଗେଇ ଗଲେ । ଗ୍ୟାରେଜରୁ ଜିପ୍‌ଟିକୁ ବାହାର କରି ଛୁଟାଇଦେଲେ ଥାନା ଅଭିମୁଖେ । ଥାନାରୁ ଗୋଟିଏ ସଶସ୍ତ୍ର ପୋଲିସ ଭ୍ୟାନ ନେଇ ଚନ୍ଦ୍ରକାନ୍ତ ବାବୁଙ୍କ ଘରକୁ ଆସେଇଲେ । ଚନ୍ଦ୍ରକାନ୍ତ ବାବୁଙ୍କ ଘର ପାଖରେ ପହଞ୍ଚି ଦେଖିଲେ ପୋଲିସ ପୂର୍ବପରି ପହରା ଦେଉଛନ୍ତି । ଏସ୍.ପି. ସାହେବ ସେଠାରେ ଅପେକ୍ଷା ନକରି ସାଙ୍ଗରେ ନେଇଥିବା ପୋଲିସମାନଙ୍କୁ ଧରି ଉପର ମହଲାକୁ ଉଠିଲେ ।

ଚନ୍ଦ୍ରକାନ୍ତ ବାବୁ ଗୋଟିଏ ଆରାମ ଚେୟାରରେ ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ଶୋଇ ଯାଇଥିଲେ । କିନ୍ତୁ ଯୋତା-ଶବ୍ଦରେ ଉଠିପଡ଼ି ଏସ୍. ପି. ସାହେବଙ୍କୁ ଦେଖି ଚମକିପଡ଼ି କହିଲେ, "ନମସ୍କାର, ଆପଣ କୁଆଡ଼େ ଆସିଲେ ? କଣ କିଛି ଘଟିଗଲା କି ?

"ହଁ, ସେପରି କିଛି ନୁହେଁ । ଆପଣଙ୍କର ସମସ୍ତ ଜିନିଷ-ପତ୍ର ନିରାପଦ ସ୍ଥାନରେ ଅଛି କି ନାହିଁ ଦେଖି ଯିବାକୁ ଆସିଲି ।"

Digitized by srujanika@gmail.com

"ମୋ ଜିନିଷପତ୍ର ତ କିଛି ବାହାରେ ରଖିନି । ଯାହା ଟଙ୍କା, ସୁନା ଅଛି, ସେ ସବୁତ ଏଇ ମୋ ମୁଣ୍ଡ ପାଖ ଷ୍ଟ୍ରେଜେରୀ ଭିତରେ ଅଛି । ଷ୍ଟ୍ରେଜେରୀର ଖୋଲା ହୋଇନ କି ଭଙ୍ଗା ଯାଇନି, ତେଣୁ ସମସ୍ତ ଜିନିଷ ନିରାପଦରେ ଅଛି । ଆଉ ଏଥିରେ ଅଫଶୋଷ କରିବାରେ କିଛି ନାହିଁ ।"

"ଚନ୍ଦ୍ରକାନ୍ତ ବାବୁ ଏ ଉପର ଘରେ ଆପଣ ଗୋଟିଏ ଗୁପ୍ତଘର ରଖିଛନ୍ତି । ସେ ଘରଟା ଆମକୁ ଦେଖାଇ ନାହାଁନ୍ତି ତ?"

ଚନ୍ଦ୍ରକାନ୍ତ ବାବୁ ଇତସ୍ତତ ହୋଇ ଯାଇ କହିଲେ, "ନାଁ ତ, ମୋରତ ସେପରି ଗୁପ୍ତଘର କିଛି ନାହିଁ । ସବୁ ଘରତ ଆପଣଙ୍କୁ ମୁଁ ଦେଖାଇଛି, ଅଉ ଗୁପ୍ତ ଘର ରଖିଲି କେଉଁଠି ?

"ତଥାପି ଆପଣ ମୋତେ ଲୁଚାଉଛନ୍ତି ? ମୁଁ ଆପଣଙ୍କ ଗୁପ୍ତ ଘରର ସନ୍ଧାନ ପାଇ ସାରିଛି । ଦୟାକରି ଆପଣଙ୍କ ତକିଆ ତଳୁ ଗୁପ୍ତଘରର ଚାବିଟି ମତେ ଦେଇ ଦିଅନ୍ତୁ ।"

ଚନ୍ଦ୍ରକାନ୍ତ ବାବୁ ଚାହିଁରହିଥାନ୍ତି ଏସ୍. ପି. ସାହେବଙ୍କ ମୁହଁକୁ । ମନରେ ତାଙ୍କର ଏକ ବଡ଼ ପ୍ରଶ୍ନବାଚୀ ଚିହ୍ନ । ମୋ ଗୁପ୍ତ ଘରକୁ, ଏ ରାତି ଅଧରାରେ ଏସ୍.ପି. ସାହେବଙ୍କର ଦେଖିବା ପାଇଁ ଏତେ ସ୍ପୃହା କାହିଁକି ?

Digitized by srujanika@gmail.com

ଏସ୍. ପି. ସାହେବ ଆଉ ଅପେକ୍ଷା ନକରି ଚନ୍ଦ୍ରକାନ୍ତ ବାବୁଙ୍କ ଚକଆ ନକଟକୁ ପାଖେଇ ଆସିଲେ । ଚକଆ ଚନ୍ଦ୍ର ବ୍ୟକ୍ତି ନେଇ ଅଲମିରା ପାଖକୁ ଆଗେଇଯାଇ ତାଲାଟିକୁ ଖୋଲି ଅଲମିରା କବାଟ ଖୋଲିଲେ । ପ୍ରକୃତରେ ସେଇଟି ଆଲମିରା ନୁହେଁ, ଗୋଟିଏ ଘରକୁ ରାସ୍ତା ।

ଏସ୍.ପି. ସାହେବ ଦୁଇ ତିନିଜଣ ପୋଲିସଙ୍କୁ ଚନ୍ଦ୍ରକାନ୍ତ ବାବୁଙ୍କ ପାଖରେ ଜଗାଇ ଦେଇ ଆଉ କେତେଜଣ ପୋଲିସଙ୍କୁ ନେଇ ଗୁପ୍ତଘର ଭିତରକୁ ଗଲେ । ଡାହାଣ ହାତରେ ପିସ୍ତଲ ଓ ବାମ ହାତରେ ଟର୍ଚ୍ଚ । ଘରଭିତରେ ଲାଇଟର ବଂଦୋବସ୍ତ ନାହିଁ । ଏସ୍. ପି. ସାହେବ ସମସ୍ତଙ୍କୁ ଟର୍ଚ୍ଚ ଜାଳିବାକୁ କହିଲେ । ଟର୍ଚ୍ଚ ଆଲୁଅରେ ଯାହା ଦେଖିଲେ ତାଙ୍କ ପାଦ ତଳୁ ମାଟି ଖସିଗଲା ପରି ଲାଗିଲା । ଅପରାଧୀ ଯାହା ସବୁ ଲେଖିଥିଲା ତାହା ସମସ୍ତ ସତ୍ୟ । ଛଅଜଣ ଦସ୍ୟୁ ଅଚେତହୋଇ ପଡ଼ିଛନ୍ତି । ସମସ୍ତଙ୍କ ଶରୀରଟି ମାନ କଳା କନାରେ ଆବୃତ୍ତ । ମୁହଁରେ ମଧ୍ୟ କଳା କନା ବନ୍ଧାଯାଇଛି ଆଖି ଦୁଇଟିକୁ ଛାଡ଼ି ।

ଆଉ ଅଯଥା କାଳ ବିଳମ୍ବ ନକରି ଏସ୍. ପି. ସାହେବ ପୋଲିସମାନଙ୍କୁ ଆଦେଶ ଦେଲେ, ଏ "ଦସ୍ୟୁଦଳକୁ ହସ୍ତ ପଦ ବନ୍ଧନ କରି ଭ୍ୟାନ୍ ଭିତରକୁ ନେଇଯାଅ ।"

ପୋଲିସମାନେ ଦସ୍ୟୁଦଳଙ୍କୁ ଭ୍ୟାନ ଭିତରକୁ ନେଇଗଲେ । ତା ପରେ ଏସ୍. ପି. ସାହେବ ସେ ଘରଟିକୁ ତନ୍ନ ତନ୍ନ କରି ଦେଖିବାକୁ ଲାଗିଲେ । ଘରଟି ମାଦକ ଦ୍ରବ୍ୟରେ ଭରପୁର

Digitized by srujanika@gmail.com

ହୋଇଛି । ୧୫, ୧୬ ଜଣଙ୍କ ଗୁଳି ଖାଇ ଆହୋଇଛି ଓ ୫୦ ଜଣଙ୍କ ଅଫିସ ଅଛି । ଏସ୍.ପି. ସାହେବ ସେ ସମସ୍ତ ଜିନିଷ ସିଜ୍ କରିଲେ ଏବଂ ଘରଟିରେ ତାଲାଦେଇ ଫେରି ଆସି ଚନ୍ଦ୍ରକାନ୍ତ ବାବୁଙ୍କୁ ଗିରଫ କଲେ । ଦେଶରେ ସ୍ୱର୍ଣ୍ଣ ନିୟନ୍ତ୍ରଣ ଓ ନିଶା ନିବାରଣ ବାଧ୍ୟତାମୂଳକ କରାଯାଉଥିବାବେଳେ ଚନ୍ଦ୍ରକାନ୍ତ ବାବୁ ଗୋପନ ନିଶା ଓ ସୁନା ବ୍ୟବସାୟ କରୁଥିଲେ ।

ଏସ୍.ପି. ସାହେବ ସମସ୍ତ ଜିନିଷ ଓ ଦସ୍ୟୁମାନଙ୍କୁ ଏବଂ ଚନ୍ଦ୍ରକାନ୍ତ ବାବୁଙ୍କୁ ଥାନାକୁ ପଠାଇଦେବା ପରେ ନିଜେ ଜିପ୍‌ରେ ଗୋଟିଏ ପୋଲିସ ସାଙ୍ଗରେ ନେଇ ଶ୍ରୀକାନ୍ତ ବାବୁଙ୍କ ଘର ଅଭିମୁଖେ ଜିପ୍‌ଟିକୁ ଛୁଟାଇ ଦେଲେ ।

ଶ୍ରୀକାନ୍ତ ବାବୁଙ୍କ ଘର ନିକଟରେ ଥିବା ଗ୍ୟାରେଜ ପାଖକୁ ଯାଇ ଦେଖିଲେ ବାହାର ପଟୁ ତାଲା ପଡିଛି । ପକେଟରୁ ରିଭଲଭର ବାହାରି ତାଲା ଖୋଲି ଭିତରକୁ ଗଲେ । ଘରଟିକୁ ଟର୍ଚ୍ଚ ସାହାଯ୍ୟରେ ଦେଖିବାକୁ ଲାଗିଲେ । କେତେଗୁଡ଼ିଏ ରାସାୟନିକ ପଦାର୍ଥ, ପିସ୍ତଲ, ଗୁଳି, ଡିଜୋଲି ଟଙ୍କା, ସୁନାବାକ୍ସ ଜବତ କଲେ । ଏ ସମସ୍ତ ଜିନିଷ ସିଜ୍ କଲେ । ତା ପରେ ଗ୍ୟାରେଜର ପଚ୍ଛପଟେ ପଡ଼ିଥିବା ଦସ୍ୟୁକୁ ଗିରଫ କରି ଥାନାକୁ ଫେରିଲେ ।

ସେତେବେଳକୁ ଆକାଶରେ ଜହ୍ନ ତାରା ହସି ଉଠିଲାଣି । ପୋଲିସଭ୍ୟାନ ଓ ଏସ୍.ପି.ଙ୍କ ଜିପ୍ ନିର୍ଜନ ରାସ୍ତାରେ ଶବ୍ଦ ସୃଷ୍ଟି କରି ଚାଲିଥାଏ । ଏସ୍, ପି, ସାହେବଙ୍କ ମନରେ ପ୍ରଶ୍ନ ଉଠୁଥାଏ କିଏ ଏହି ଅପରାଧୀ ? ସେଇ ସବୁ କ୍ଷେତ୍ରରେ ଦୁର୍ନୀତିର

Digitized by srujanika@gmail.com

ଲୋପ କରିବାକୁ ଚେଷ୍ଟା କରୁଛି ଓ ଜନତାର ସେବା କରୁଛି । ପୁଣି ବଙ୍ଗାଳୀଙ୍କ ଦସ୍ୟୁ ଧରାଇ ଦେଉଛି । ଏ ଯୁଗରେ ପୁଣି ଏପରି ବ୍ୟକ୍ତି ଅଛନ୍ତି !

ତା ପରଦିନ ସନ୍ଧ୍ୟା ଖବର କାଗଜ ବାଲା ପ୍ରତି ଘାଟରେ ବଡ଼ପାଟିରେ ଡାକି ଡାକି ଗଲା, "ଚନ୍ଦ୍ରକାନ୍ତ ବାବୁଙ୍କ ଘରେ ଗୋଟିଏ ବଡ଼ ଦସ୍ୟୁ ଦଳକୁ ଗିରଫ କରାଯାଇଛି । ସେମାନଙ୍କ ସହିତ ଜମିଦାର ଚନ୍ଦ୍ରକାନ୍ତ ବାବୁଙ୍କୁ ଗିରଫ କରାଯାଇଛି । ଜମିଦାର ଚନ୍ଦ୍ରକାନ୍ତଙ୍କ ଘରୁ କେତେଗୁଡ଼ାଏ ଚୋରି ଦ୍ରବ୍ୟ ସିଜ୍ ହୋଇଛି । ଚନ୍ଦ୍ରକାନ୍ତ ଦାଣ ଚୋରା ବ୍ୟବସାୟ କରୁଥିଲେ । ଅପରାଧୀ ସମସ୍ତଙ୍କୁ ଧରି ପୋଲିସ ହାତରେ ସମର୍ପିଛି । ଏ ଦସ୍ୟୁ ଦଳ ଅପରାଧୀର ନାଁ ଦେଇ ଚୋରି ଓ ହତ୍ୟା କରୁଥିଲେ । ପ୍ରକୃତ ଅପରାଧୀ ଚୋରି, ହତ୍ୟା, ଅନ୍ୟାୟ କରେନି । ଜନତାର ସେବା ଅପରାଧୀର ବ୍ରତ ।

ସାରା ସହରରେ ଚହଳ ପକାଇ ଦେଇଛି ଏହି ଅପରାଧୀର କାରସାଦ । ତେବେ ସବୁରି ମନରେ ସେହି ଗୋଟିଏ ପ୍ରଶ୍ନ — କିଏ ଏହି ଅପରାଧୀ ?

× × ×

ସମୟ କାହାକୁ ଅପେକ୍ଷା କରେନି । ଦିନ ପରେ ଦିନ, ମାସ ପରେ ମାସ ହୋଇ ତିନିବର୍ଷ ବିତିଗଲାଣି । ଡକ୍ଟର ମିଶ୍ରଙ୍କର ଆଜି ଶ୍ରାଦ୍ଧୋତ୍ସବ । ସବୁରି ମନରେ ନୂଆ ଆଶା ଓ ଆନନ୍ଦ ଭରି ଯାଇଛି । ଓଡ଼ିଶାରେ ଆଜି ଗୋଟିଏ ଗବେଷଣାଗାର

Digitized by srujanika@gmail.com

ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଉଛି । ଡକ୍ଟର ମିଶ୍ରଙ୍କର କଳ୍ପନା ଆଜ ବାସ୍ତବ ରୂପ ପାଇଛି । ଡକ୍ଟର ମିଶ୍ରଙ୍କ ନାମ ଅନୁସାରେ ଗବେଷଣା ଗାରଟିର ନାମ କରଣ ହୋଇଛି "ମିଶ୍ର ଇନଷ୍ଟିଚ୍ୟୁଟ"

ବୃକ୍ଷଆଡେ ବହୁଳକଣ୍ଠ ଆଲୋକର ଲହରୀ ଖେଳୁଛି । ଗବେଷଣାଗାର ଛାତ ଉପରଠାରୁ ଗେଟ ପର୍ଯ୍ୟନ୍ତ ନାନା ପ୍ରକାର ତୋରଣ ଦ୍ୱାରା ସଜ୍ଜା ହୋଇଛି । ତଳେ ସବୁଜ ଘାସର ଗାଲିଚା । ଗବେଷଣାଗାରର ସାମନା ପ୍ରାଙ୍ଗଣରେ ଶୋଭାପାଉଛି ଡକ୍ଟର ମିଶ୍ରଙ୍କର ଶୁଭ୍ରପ୍ରସ୍ତର ନିର୍ମିତ ପ୍ରତିମୂର୍ତ୍ତି । ମୂର୍ତ୍ତି ବୃକ୍ଷ ଶାଖ ସୁବାସିତ ଫୁଲ ପତ୍ର ଲତାରେ ସଜା ଯାଉଛି । ବାମ ପାଖରେ ଫୁଲର ଉଦ୍ୟାନ । କୃତ୍ରିମ ଝରଣାମାନଙ୍କରୁ ଝରି ହେଉଛି ଝର ଝର ପାଣି । ଝରଣା ଗୁଡିକ ବିଭିନ୍ନ ରଙ୍ଗର ଆଲୁଅରେ ସଜ୍ଜା ପାଇ ଝରଣାର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରୁଛି । ପବନରେ ଭାସି ଆସୁଛି ସୁବାସିତ ଫୁଲର ସୁଗନ୍ଧ । ଆଉ ଅଳ୍ପ ସମୟ ପରେ ମିଶ୍ର ଇନଷ୍ଟିଚ୍ୟୁଟର ଶୁଭ୍ର ଉଦ୍‌ଘାଟନ କରାଯିବ ।

ଅପରାହ୍ଣ ପାଞ୍ଚଟା ବାଜିଲାଣି । ଗୋଧୂଳିର ଶୁଭ ଲଗନ ନଇଁ ଆସିଲାଣି । ଭଦ୍ର ବ୍ୟକ୍ତି ଭଦ୍ର ମହିଳାମାନେ ଆସିବାକୁ ଲାଗିଲେଣି । ସ୍ୱପ୍ନାଦେବୀ ଓ ଅନେକ ଭଦ୍ର ମହିଳା ଓ ଭଦ୍ରବ୍ୟକ୍ତି ଅପେକ୍ଷା କରିଛନ୍ତି । ଭାରତର ଜଣେ ପ୍ରସିଦ୍ଧ ପଦାର୍ଥ-ବିଜ୍ଞାନବିତ୍ ଡକ୍ଟର ଚନ୍ଦ୍ର କେତେବେଳେ ଆସିବେ । ସେ ଆସିଲେ ମିଶ୍ର ଇନଷ୍ଟିଚ୍ୟୁଟର ଉଦ୍‌ଘାଟନ କରିବେ । ଗୋଟିଏ ଗବେଷଣାଗାର ଜଣେ ପ୍ରବୀଣ ବୈଜ୍ଞାନିକ ଉଦ୍‌ଘାଟନ କରିବେ, ଏହା ଓଡ଼ିଶାର ଗୌରବ ।

Digitized by srujanika@gmail.com

ଆଜିକାଲି ମାଇନର ସ୍କୁଲ ଠାରୁ ଆରମ୍ଭ କରି କଲେଜ, ସିନେମା ହଲ ପର୍ଯ୍ୟନ୍ତ ସବୁ କିଛି ଉଦ୍‌ଘାଟନ କରିବେ କେହି ରାଜ୍ୟ ମନ୍ତ୍ରୀ ବା କେନ୍ଦ୍ର ମନ୍ତ୍ରୀ । ଉଦ୍‌ଘାଟନ କରିବା ପାଇଁ ବରେଣ୍ୟମାନଙ୍କୁ ଶିକ୍ଷାବିତ୍ ଯେପରି କେହି ନାହାନ୍ତି । ଯେଉଁ ଆଡ଼େ ଦେଖିବ, ସେହିଆଡ଼େ କେବଳ ମନ୍ତ୍ରୀଙ୍କୁ ନିମନ୍ତ୍ରଣ, ସମ୍ବର୍ଦ୍ଧନା ସବୁ କିଛି । କିନ୍ତୁ ସ୍ୱପ୍ନାଦେବୀ ଉଦ୍‌ଘାଟନ କରିବା ପାଇଁ ଉପଯୁକ୍ତ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରିଛନ୍ତି । ଏହା ସବୁଠାରୁ ଖୁସିର ବିଷୟ । ବୈଜ୍ଞାନିକମାନେ ଜାଣନ୍ତି ବିଜ୍ଞାନର ଗୌରବ ।

ବୈଜ୍ଞାନିକ ଡକ୍ଟର ଚନ୍ଦ ଆସି ପହଞ୍ଚିଗଲେ । ସ୍ୱପ୍ନାଦେବୀ ଓ ଅନ୍ୟାନ୍ୟ ଭଦ୍ର ବ୍ୟକ୍ତି ଆଗେଇ ଯାଇ ଡ଼କ୍ଟର ଚନ୍ଦଙ୍କୁ ପଛୋଟି ଆଣିଲେ । ମିଶ୍ର ଇନ୍‌ଷ୍ଟିଚ୍ୟୁଟର ପ୍ରଥମ ଗେଟ୍ ଉପରେ ଗୋଟିଏ ବଡ଼ କାଳୁ ଘଣ୍ଟା ରଖା ଯାଇଛି । ସେହି ଘଣ୍ଟାରେ ଠନ୍ ଠନ୍ ହୋଇ ବଜିଲା ୬ଟା । କେତେକ ଭଦ୍ରବ୍ୟକ୍ତି ଓ ସ୍ୱପ୍ନା ଦେବୀ ସହିତ ବୈଜ୍ଞାନିକ ଚନ୍ଦ ଆଗେଇ ଆସି ଗେଟ୍ ପାଖରେ ଥିବା ଗୋଟିଏ ଇଲେକ୍‌ଟ୍ରିକ ସୁଇଚ୍‌କୁ ଟିପି ଦେଲେ । ସୁଇଚ୍‌ଟି ଟିପି ଦେବା କ୍ଷଣି ଇନଷ୍ଟିଚ୍ୟୁଟର ସମସ୍ତ କବାଟ, ଝରକା ଖୋଲିଗଲା ଓ ଡ଼କ୍ଟର ମିଶ୍ରଙ୍କ ପ୍ରତିମୂର୍ତ୍ତି ଉପରେ ଥିବା ଗୋଟିଏ ତୋରଣ ଉପରେ ନାଲି ଅଲୋକରେ ଲିପି ଉଠି ଲେଖି ହୋଇଗଲା,— "ମିଶ୍ର ଇନଷ୍ଟିଚ୍ୟୁଟ୍" ପ୍ରତିଷ୍ଠାତା ଡ଼କ୍ଟର ଦେବପ୍ରସାଦ ମିଶ୍ର । ସମସ୍ତେ ପ୍ରତିମୂର୍ତ୍ତି ନିକଟକୁ ଆଗେଇ ଯାଇ ଡକ୍‌ଟର ମିଶ୍ରଙ୍କ ପ୍ରତିମୂର୍ତ୍ତି ଉପରେ ମାଲ୍ୟାର୍ପଣ କଲେ । ସ୍ୱପ୍ନା ଦେବୀଙ୍କ ଆଖି ଦୁଇଟି ଲୁହରେ

Digitized by srujanika@gmail.com

ଝଲ ଝଲ ହୋଇ ଉଠିଲା । ଡକ୍ଟର ମିଶ୍ରଙ୍କ ପାଦରେ ମଥା ନତ କରି ସାରି ସହସ୍ତଲକୁ ସମସ୍ତେ ଆଗେଇ ଗ୍ଭଲିଲେ ।

ସଭାକାର୍ଯ୍ୟ ଆରମ୍ଭ ହେଲା । ସୁଧା ଦେବୀ ପ୍ରଥମେ ନିଜ ଭୃଷଣରେ ଆସିଥିବା ପ୍ରଧାନ ଅତିଥି ଡକ୍ଟର ଚନ୍ଦଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ତା ପରେ ସେ କିପରି ୧୦ ବର୍ଷ ତଳେ ସ୍ୱର୍ଗୀୟ ହେଲେ ମିଶ୍ର ଇନଷ୍ଟିଚ୍ୟୁଟ ଠିଆ ହେବାର ସ୍ୱପ୍ନ ଦେଖୁଥିଲେ, ସେ ବିଷୟ ବର୍ଣ୍ଣନା କଲେ । ଡକ୍ଟର ମିଶ୍ର ଆଜି ନାହାନ୍ତି, କିନ୍ତୁ ତାଙ୍କର ସ୍ୱର୍ଗତ ଆତ୍ମା ଏ ଗବେଷଣାଗାର ଉଦ୍‌ଘାଟନ ହେବା ଦେଖି ଏହା ଉପରେ ଶୁଭ ଆଶୀର୍ବାଦ ବୃଷ୍ଟି କରୁଥିବେ ।

ଆମେ କୋଟିଏ ଗବେଷଣାଗାର ଗଢ଼ି ଦେଇଥିଲୁ ସତ କିନ୍ତୁ ଏ ଗବେଷଣାଗାର କିପରି ଦେଶ ବିଦେଶରେ ନାଁ କରିବ, ସେ ଭାର ଆମ ଯୁବ ଯୁବତୀଙ୍କ ଉପରେ । ଆମ ଓଡ଼ିଶାର ଯୁବ ଛାତ୍ରୀ-ମାନେ କିପରି ଭଲ ଗବେଷଣା କରି ବିଜ୍ଞାନ କ୍ଷେତ୍ରରେ ଆଗେଇ ଯିବେ ଓ ବିଦେଶ ମାନଙ୍କରେ ସୁନାମ ଅର୍ଜନ କରିବେ, ତାହାହେଲେ ଏ ଗବେଷଣାଗାର ପ୍ରତିଷ୍ଠିତ ହେବାର ଉଦ୍ଦେଶ୍ୟ ସଫଳ ହେବ । ଦେଶ ବିଦେଶରେ ଏ ଗବେଷଣାଗାର ସୁପରିଚିତ ହେଉ, ଏହାହିଁ ମୁଁ ଆଜି ସମସ୍ତଙ୍କ ପାଖରେ ନିବେଦନ କରେ ।

ଏ ଗବେଷଣାଗାରଟି ଗଢ଼ି ଉଠିବା ପାଇଁ ଯେଉଁମାନେ ଆର୍ଥିକ ସାହାଯ୍ୟ ସ୍ନେହ ସହାନୁଭୂତି ଓ ପ୍ରେରଣା ଦେଇଛନ୍ତି, ସେମାନଙ୍କ ନିକଟରେ ମୁଁ ଚିର କୃତଜ୍ଞ । ଏ ଗବେଷଣାଗାର ତିଆ

ବନ ପାଇଁ କୀର୍ତ୍ତି ଅର୍ଜନ କରି ଡକ୍ଟର ମିଶ୍ରଙ୍କ ଆତ୍ମାକୁ ଅମର ରଖୁ ।

ଶେଷରେ ଡକ୍ଟର ଚନ୍ଦ୍ର ପ୍ରଧାନ ଅତିଥି ଭାବରେ ଯୋଗ ଦେଇ ଥିବାରୁ ତାଙ୍କ ନିକଟରେ କୃତଜ୍ଞ । ଆଜି ମଧ୍ୟ ଏଠାରେ ଯୋଗ ଦେଇଥିବା ଭଦ୍ର ବ୍ୟକ୍ତି, ଭଦ୍ର ମହିଳାମାନଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଆଉ ବିଶେଷ କିଛି କହିବାର ନାହିଁ । ପ୍ରଧାନ ଅତିଥିଙ୍କୁ କିଛି କହିବା ପାଇଁ ମୁଁ ଅନୁରୋଧ କରୁଛି ।

ସ୍ୱପ୍ନା ଦେବୀଙ୍କ ଭାଷଣ ଶେଷରେ ସଭାସ୍ଥଳ ଘନ ଘନ କରତାଳରେ ମୁଖରିତ ହୋଇ ଉଠିଲା । ଡକ୍ଟର ଚନ୍ଦ୍ର ବିଜ୍ଞାନ ଗବେଷଣାର ଗୁରୁତ୍ୱ ସଂପର୍କରେ ଏକ ସାରଗର୍ଭକ ଭାଷଣ ଦେଲେ ।

ମିଶ୍ର ଇନ୍‌ଷ୍ଟିଚ୍ୟୁଟ ଗଢ଼ି ଉଠିବାର ଆଜକୁ ୯.୧୦ ଛଅବର୍ଷ ହୋଇ ଗଲାଣି । ଭାରତର ସବୁଆଡ଼ୁ ଛାତ୍ରମାନେ ଆସି ଏଠାରେ ଗବେଷଣା କରୁଛନ୍ତି । ଡ଼ିରେକ୍ଟର ଅଛନ୍ତି ଡକ୍ଟର ମିସ୍ ସ୍ୱପ୍ନା ଦେବୀ । ଗବେଷଣା କରିବା ପାଇଁ ଅନେକଗୁଡ଼ିଏ ବିଭାଗ ଅଛି । ପ୍ରତ୍ୟେକ ବିଭାଗରେ ଜଣେ ପ୍ରଫେସର, ଦୁଇଜଣ ରିଡର୍ ଓ ପାଞ୍ଚ ଛଅଜଣ ରିସର୍ଚ୍ଚ ଅଫିସର ଅଛନ୍ତି ।

Digitized by srujanika@gmail.com

ଗବେଷଣା ବିଭାଗ ମଧ୍ୟରେ ଡେଲଟା ରଶ୍ମି ବିଭାଗ, ପରମାଣୁ ଶକ୍ତି ବିଭାଗ, ରଂଜନ ରଶ୍ମି ବିଭାଗ ପ୍ରଭୃତି ପ୍ରଧାନ। ସବୁ ବିଭାଗ ମଧ୍ୟରୁ ଡେଲଟାରଶ୍ମି ବିଭାଗ ଅନ୍ୟତମ। ଡେଲଟା ରଶ୍ମି ବିଭାଗର ମୁଖ୍ୟ ଅଧ୍ୟାପିକା ହେଉଛନ୍ତି ଡକ୍ଟର ମିସ୍ ସ୍ୱପ୍ନା ଦେବୀ। ସ୍ୱପ୍ନାଦେବୀଙ୍କ ପାଖରେ ଦୁଇଜଣ ସହକାରୀ ଅଧ୍ୟାପକ ଥାଆନ୍ତି। ସେମାନେ ହେଲେ ଡକ୍ଟର ନିକୁଂଜ ମିଶ୍ର ଓ ସତ୍ୟବାନ୍ ରାଓ। ଦୁଇଜଣ ସିନିୟର ରିସର୍ଚ୍ଚ ଅଫିସର ଥାଅନ୍ତି। ତାଙ୍କର ନାମ ସୁଧାଂଶୁ ଘୋଷ ଓ ସତ୍ୟେନ୍ ମୁଖାର୍ଜୀ।

ସ୍ୱପ୍ନାଦେବୀ ସବୁବେଳେ କର୍ମ ବ୍ୟସ୍ତ। ତାଙ୍କର ବ୍ୟସ୍ତତା ଗବେଷଣା ଭିତରେ। ସ୍ୱପ୍ନାଦେବୀଙ୍କ ପାଖରେ ଜଣେ ବିଶ୍ୱସ୍ତ କର୍ମଚାରୀ ଥାଅନ୍ତି। ସେ ହେଉଛନ୍ତି ଆମର ପୂର୍ବ ପରିଚିତ ସୁମନ୍ତ ମିଶ୍ର। ସୁମନ୍ତ ମିଶ୍ର, ଇନ୍‌ଷ୍ଟିଚ୍ୟୁଟ୍‌ରେ ଚାକିରୀ କରିବାର ପାଞ୍ଚବର୍ଷ ହୋଇଗଲାଣି। ସେ ଏହି ପାଞ୍ଚବର୍ଷ ଭିତରେ ନିଜର କର୍ମଠ, ସଚ୍ଚୋଟ୍ ପଣିଆ ଯୋଗୁ ସ୍ୱପ୍ନାଦେବୀଙ୍କର ବିଶ୍ୱସ୍ତ କର୍ମଚାରୀ ହୋଇ ପାରିଛନ୍ତି। ସ୍ୱପ୍ନା ଦେବୀଙ୍କର ରିସର୍ଚ୍ଚ ପେପର କାର୍ଯ୍ୟ ବା ଅଫିସ କାର୍ଯ୍ୟ ବା ଯେ କୌଣସି କାର୍ଯ୍ୟ ହେଉ, ସବୁଥିରେ ଭାର ସୁମନ୍ତ ବାବୁଙ୍କ ଉପରେ। ସୁମନ୍ତବାବୁ ଜଣେ କର୍ମଠ ଓ ଅମାୟିକ ବ୍ୟକ୍ତି। ତାଙ୍କୁ ଇନ୍‌ଷ୍ଟିଚ୍ୟୁଟ୍‌ର ଅଧ୍ୟାପକ, ଛାତ୍ର ସମସ୍ତେ ଆଦର କରନ୍ତି। ସମସ୍ତେ ତାଙ୍କୁ ଦେଖି ଖୁସି ହୁଅନ୍ତି ଓ ସୁମନ୍ତବାବୁ ମଧ୍ୟ ସମସ୍ତଙ୍କୁ ଦେଖିଲେ ଖୁସି ହୁଅନ୍ତି। କର୍ମମୟ ଜୀବନ ଖୁସିରେ ଗଡ଼ି ଚାଲିଥାଏ।

କିନ୍ତୁ ସୁମନ୍ତ ବାବୁଙ୍କ ଉପରେ ଜଣେ ବ୍ୟକ୍ତି ଖୁସି ହୁଅନ୍ତି ନାହିଁ। ସେ ହେଉଛନ୍ତି ସ୍ୱପ୍ନା ଦେବୀଙ୍କ ପାଖରେ କାମ

Digitized by srujanika@gmail.com

କରୁଥିବା ସିନ୍ଦ୍ରୀର ରିସର୍ଚ୍ଚ ଅଫିସର ସୁଧାଂଶୁ ଘୋଷ । ସୁଧାଂଶୁ ବାବୁ ସ୍ୱପ୍ନା ଦେବୀଙ୍କ ନିକଟରେ ସୁମନ୍ତ ବାବୁଙ୍କ ନାମରେ ଅନେକ ପ୍ରକାର ଅଭିଯୋଗ ବାଢ଼ନ୍ତି, କିନ୍ତୁ ସ୍ୱପ୍ନାଦେବୀ ହସି ଉତ୍ତର ଦିଅନ୍ତି ସୁମନ୍ତ ବାବୁଙ୍କ ପରି ସଚ୍ଚୋଟ ଓ କର୍ମଠ କର୍ମଚାରୀ ମିଳିବା ବିରଳ । ତା ପରେ ଇନ୍‌ଷ୍ଟିଚ୍ୟୁଟ୍‌ର ସମସ୍ତେ ତ ସୁମନ୍ତ ବାବୁଙ୍କ ଉପରେ ଖୁସି । ଏକଥା ଶୁଣି ସୁଧାଂଶୁ ବାବୁ କିଛି ଉତ୍ତର ଦିଅନ୍ତି ନାହିଁ ସିନା, କିନ୍ତୁ ମନରେ ତାଙ୍କର ରାଗ ଜମାଟ ବାନ୍ଧେ ।

ଦିନକର ଘଟଣା । ସ୍ୱପ୍ନା ଦେବୀ ନଥାନ୍ତି, କୌଣସି କାର୍ଯ୍ୟରେ ବାହାରକୁ ଯାଇଥାନ୍ତି ସମସ୍ତ ଦାୟିତ୍ୱ ସୁମନ୍ତ ବାବୁଙ୍କ ଉପରେ ଦେଇ । ସୁମନ୍ତ ବାବୁଙ୍କର ବହୁତ କାମ । ଏବେ ତ ବଡ଼ ଇନ୍‌ଷ୍ଟିଚ୍ୟୁଟର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । ଦିନ ବୋଧହୁଏ ଗୋଟାଏ ସମୟ । ସୁମନ୍ତ ବାବୁ ସେ ରିସର୍ଚ୍ଚ କାଗଜ ପତ୍ରଗୁଡ଼ିକ ଠିକ୍ କରି ରଖୁଥାନ୍ତି । ସେହି ସମୟରେ ସୁଧାଂଶୁ ଘୋଷ ଆସି ଡେଲଟା ରଶ୍ମିର ଗବେଷଣା କାଗଜପତ୍ର ମାଗିଲେ । କିନ୍ତୁ ସୁମନ୍ତବାବୁ ଦେଲେ ନାହିଁ, କହିଲେ— ଡିରେକ୍ଟରଙ୍କର ବିନା ଅନୁମତିରେ ମୁଁ କୌଣସି କାଗଜପତ୍ର ଆପଣଙ୍କୁ ଦେଖାଇ ପାରିବି ନାହିଁ । ଡିରେକ୍ଟର ତ ଆଉ ଦୁଇଦିନ ପରେ ଆସିବେ । ସେ ଆସିଲେ ଆପଣ ନେଇ ପାରିବେ ।

ସୁମନ୍ତ ବାବୁଙ୍କ ଠାରୁ ଏପରି ଉତ୍ତର ପାଇ ସୁଧାଂଶୁ ଘୋଷ ଚିଡ଼ିଗଲେ କହିଲେ, "ଡିରେକ୍ଟର ଯେତେବେଳେ ଏଠାରେ ନାହାନ୍ତି, ମୋର ଯାହା ଦରକାର କାଗଜ ପତ୍ର ସେ ସମସ୍ତ ମୁଁ

Digitized by srujanika@gmail.com

ଦେଖିବ । ଆପଣ କାହିଁକି ମନା କରିବେ । ଡ଼ିରେକ୍ଟର ନାହାଁନ୍ତି ବୋଲି କଣ ଆପଣ ନିଜକୁ ଡ଼ିରେକ୍ଟର ବୋଲି ମନେ କରୁଛନ୍ତି କି ? ସାମାନ୍ୟ ଜଣେ କରଣୀ ଭଳିଆ ଲୋକ ହୋଇ ମତେ ପୁଣି କାଗଜପତ୍ର ଦେଖିବାକୁ ମନା କରିବେ ? ଆପଣ ଭୁଲି ଯାଉଛନ୍ତି ଯେ ମୁଁ ଜଣେ ସିନିୟର ରିସର୍ଚ୍ଚ ଅଫିସର ।"

"ମୁଁ କରଣୀ ହୁଏ ବା ପିଅନ ହୁଏ, ତଥାପି ମୁଁ ଡ଼ିରେକ୍ଟରଙ୍କର କର୍ମଚାରୀ । ଡ଼ିରେକ୍ଟରଙ୍କ ଆଦେଶକୁ ମାନି ଚଳିବା ମୋର କର୍ତ୍ତବ୍ୟ । ଡ଼ିରେକ୍ଟର ମୋ ଉପରେ ସମସ୍ତ କାଗଜ ପତ୍ର ଦାୟିତ୍ୱ ଦେଇଛନ୍ତି । ଆଜି ମଧ୍ୟ ତାଙ୍କ ଅନୁପସ୍ଥିତିରେ କୌଣସି କାଗଜପତ୍ର ଦେଖାଇବାକୁ ନାହିଁ କରିଛନ୍ତି । ସେତେବେଳେ ଆପଣ ବା ଯେ କେହି ଚାହିଁଲେ ମଧ୍ୟ କୌଣସି କାଗଜପତ୍ର ମୁଁ କାହାକୁ ଦେଖାଇ ପାରିବି ନାହିଁ । ମୋର ଯଦି ଏହା ଦୋଷ ହୁଏ, ତେବେ ଡ଼ିରେକ୍ଟର ଆସିଲେ ଆପଣ କହି ପାରନ୍ତି ।"

ସୁମନ୍ତ ବାବୁଙ୍କ ଠାରୁ ଏ ସବୁ ଶୁଣି ସୁଧାଂଶୁ ବାବୁ ରାଗି-ଯାଇ ସୁମନ୍ତ ବାବୁଙ୍କ ସହିତ ବଚସା ଆରମ୍ଭ କରିଦେଲେ । ସୁମନ୍ତବାବୁ ମଧ୍ୟ ଦୁଇପଦ କଡ଼ା କଥା କହିଦେଲେ । ତେଣୁ ଦୁହିଁଙ୍କ ମଧ୍ୟରେ କିଛି ସମୟ କଟୂକ୍ତି ବଚସା ହୋଇଗଲା । ସେହି ଦିନ ଘଟଣା ପରଠାରୁ ଦୁହିଁଙ୍କ ମନୋମାଳିନ୍ୟଟା ଘନୀଭୂତ ଆକାର ଧାରଣ କଲା । ଡ଼ିରେକ୍ଟର ଫେରିବା ପରେ ସୁମନ୍ତ ବାବୁଙ୍କ ନାମରେ ଅନେକ ପ୍ରକାର ଅଭିଯୋଗ ସୁଧାଂଶୁ ବାବୁ କରିବାକୁ ଲାଗିଲେ । କିନ୍ତୁ କୌଣସି ଅଭିଯୋଗଗୁଡ଼ିକ ଫଳପ୍ରଦ

Digitized by srujanika@gmail.com

ହେଲେ । ତେଣୁ ସୁଧାଂଶୁ ବାବୁଙ୍କର ରାଗ ସୁମନ୍ତ ବାବୁଙ୍କ ଉପରେ ଦିନକୁ ଦିନ ବଢ଼ି ଚାଲିଲା ।

× × ×

ସରକାରଙ୍କ ତରଫରୁ ସମ୍ବାଦପତ୍ର ଜରିଆରେ ଘୋଷଣା କରାଯାଇଛି, "ଅପରାଧୀକୁ ଯଦି କିଏ ଧରାଇ ଦେଇପାରିବ, ତେବେ ପାଞ୍ଚ ହଜାର ଟଙ୍କା ପୁରସ୍କାର ପାଇବ" । ଅନୁସନ୍ଧାନ କାର୍ଯ୍ୟ ପୋଲିସ ଦଳ ତତ୍ପର ହୋଇ ଉଠିଛନ୍ତି । କିନ୍ତୁ କିଏବା ଧରିବ ଅପରାଧୀକୁ ? କାହାର ଏତେ ଶକ୍ତି ଅଛି ଯେ ଅପରାଧୀକୁ ବନ୍ଦୀ କରି ପାରିବ ?

ଅପରାଧୀ ଧନୀଲୋକମାନଙ୍କର ଶତ୍ରୁ । କିନ୍ତୁ ଗରିବର ବନ୍ଧୁ । ସେ ତ ହତ୍ୟା କରୁନ କି କିଛି ଅନ୍ୟାୟ କରୁନ । ବରଂ ଅପରାଧୀର ଉପରେ ଦୁର୍ନୀତି ପ୍ରଶ୍ରୟ ପାଇ ପାରୁନ । ଅନ୍ୟାୟ, ଅତ୍ୟାଚାର କମି ଯାଉଛି । ଅପରାଧୀତ ଦେଶର ଉପକାର କରୁଛି । ଅପକାରତ କରୁନ । ତଥାପି ପୋଲିସ ଦଳ ଅପରାଧୀକୁ ଧରିବା ପାଇଁ ଏତେ ବ୍ୟସ୍ତ କାହିଁକି ?

ଦିନ ପରେ ଦିନ ଗଡ଼ି ଚାଲିଛି । କିନ୍ତୁ ପୋଲିସ ଦଳ ଅପରାଧୀକୁ ଧରିବାକୁ ସକ୍ଷମ ହୋଇ ପାରିନାହାନ୍ତି । ସମସ୍ତ ଚେଷ୍ଟା ସେମାନଙ୍କର ବୃଥା ହୋଇଛି । ପୋଲିସ ଦଳ, ଧନୀ ମହାଜନମାନଙ୍କର ଅପରାଧୀକୁ ଧରିବାର ଆଶା କମି ଆସିଲାଣି । କେଜାଣି ଭାଗ୍ୟରେ କାହାର ଅଛି ପାଞ୍ଚହଜାର ଟଙ୍କା ପୁରସ୍କାର ପାଇବାକୁ ।

Digitized by srujanika@gmail.com

ସକାଳ ସାଢେ ଆଠଟା ସମୟ । ଆଇ.ଜି. ସାହେବ ବସି ନିଜ ନାମରେ ଆସିଥିବା ଚିଠିଗୁଡ଼ିକ ଦେଖୁଛନ୍ତି । ହଠାତ୍ ତାଙ୍କର ନଜର ପଡ଼ିଲା ଗୋଟିଏ ନୀଳଲଫାପା ଉପରେ । ଲଫାପାଟି କେଉଁଠୁ ଆସିଛି ଜାଣିବାକୁ ମନ ତାଙ୍କର ଉଦ୍‌ବିଗ୍ନ ହୋଇ ଉଠିଲା । ସବୁ ଲଫାପା ଠାରୁ ଏ ଲଫାପାଟି ଭିନ୍ନ । କୌଣସି ବ୍ୟକ୍ତିଗତ ଚିଠି । ତରବର ହୋଇ ଲଫାପାଟି ଖୋଲି ପଢ଼ିବାକୁ ଲାଗିଲେ । ଲେଖା ଅଛି—

ମାନନୀୟ ଆଇ.ଜି. ସାହେବ,

ନମସ୍କାର । ଆପଣଙ୍କ ପାଖକୁ ଚିଠି ଲେଖିବା ମୋର ଏହା ପ୍ରଥମଥର । କିନ୍ତୁ ଏ ଚିଠିଟି ସାଧାରଣ ଚିଠିଠାରୁ ପୃଥକ୍ ବଡ଼ ଦାୟିତ୍ୱ ପୂର୍ଣ୍ଣ ଏ ଚିଠି । ଆପଣ ଯାହାକୁ ଖୋଜି ଖୋଜି ପାଉ ନାହାନ୍ତି, ସେ ଅଜି ଧରା ପଡ଼ିଛି । ଆପଣ ଜାଣି ପାରୁଛନ୍ତି ସେ କିଏ ? ସେ ହେଉଛି ଆପଣଙ୍କର ଚିର ପରିଚିତ ଅପରାଧୀ । ଅପରାଧୀ ଜଣେ ସାଧାରଣ ମଣିଷ । ଆପଣଙ୍କ ଆଖି ସାମନାରେ ସେ ଅଛି, କିନ୍ତୁ ଆପଣ ତାକୁ ଚିହ୍ନି ପାରୁ ନାହାଁନ୍ତି । ସେ ଯେମିତି ସମସ୍ତଙ୍କ ଆଖିରେ ଅନ୍ଧ ପୁଟୁଳି ବାନ୍ଧି ଦେଇଛି ।

କିନ୍ତୁ ମୋ ଆଖି ଯୋଡ଼ିକ ଅପରାଧୀ ପଛରେ ଘୂରି ବୁଲୁଥିଲା ଆଜିକୁ ଦୀର୍ଘ ପାଞ୍ଚବର୍ଷ ଧରି । ଦୀର୍ଘ ଦିନ ଧରି ଅନୁସନ୍ଧାନ କରିବା ପରେ ଅପରାଧୀକୁ ଆଜି ମୁଁ ଆବିଷ୍କାର କରି ପାରିଛି ସମସ୍ତ ପ୍ରମାଣର ସହିତ । ସେହି ହେଉଛି ମୋର ସୌଭାଗ୍ୟ । ହିଁ ଅପରାଧୀ କିଏ ସେ ? କେଉଁଠାରେ ଅଛି ? ସେ ସମସ୍ତ କଥା

Digitized by srujanika@gmail.com

ଜଣାଇ ତାର ପରିଚୟ ଦେଇ ଦିଏଁ । ତେବେ ଅପରାଧୀର ପରିଚୟ ଦେବା ପୂର୍ବରୁ ମୋ ପରିଚୟ ଦେଇ ଦିଏ ।

ମୁଁ ହେଉଛି, ମିଶ୍ର ଇନ୍ଷ୍ଟିଚ୍ୟୁଟର ଡେଲଟା ରଶ୍ମି ବିଭାଗର ସିନିୟର ରିସର୍ଚ୍ଚ ଅଫିସର ସୁଧାଂଶୁ ଘୋଷ । ଆଜକୁ ଛଅବର୍ଷ ହୋଇଗଲାଣି ମୁଁ ଏହିଠାରେ ଅଛି । ଇନ୍ଷ୍ଟିଚ୍ୟୁଟର ସମସ୍ତେ ମୋତେ ଚିହ୍ନନ୍ତି । ତେଣୁ ଆପଣ ମୋତେ ଏଠାରେ ପାଇବାକୁ ସମୟ ଲାଗିବନି ।

ଅଜ ଅପରାଧୀ କିଏ ଜାଣନ୍ତି ? ସେ ଏହିଠାରେ ଅଛନ୍ତି । ଆମର ପାଖରେ । ସମସ୍ତଙ୍କ ନିକଟରେ ସେ ବିଶ୍ୱସ୍ତ, କର୍ମଠ ଓ ଲୋକପ୍ରିୟ । ସେ ଏପରି ଛଦ୍ମବେଶୀ ଯେ ତାଙ୍କୁ ଚିହ୍ନିବାର ଉପାୟ ନାହିଁ । ବହୁତ ଦିନ ପରେ ତାଙ୍କୁ ଚିହ୍ନି ପାରିଛି ମୁଁ ।

ଅପରାଧୀର ଆଜ ଗୋଟିଏ ଭଲ ପରିଚୟ ଦେଉଛି ଶୁଣନ୍ତୁ । ଅପରାଧୀ ହେଉଛି ଆମ ଇନଷ୍ଟିଚ୍ୟୁଟ୍‌ର ଡିରେକ୍ଟର ମହାଶୟଙ୍କର ମିସ୍ ସ୍ୱପ୍ନା ଦେବୀଙ୍କର ବିଶ୍ୱସ୍ତ କର୍ମଚାରୀ । ଡିରେକ୍ଟରଙ୍କ ସମସ୍ତ କାର୍ଯ୍ୟ ପ୍ରାୟ ଅପରାଧୀ କରେ । ଅପରାଧୀ ଏଠାରେ ସମସ୍ତଙ୍କ ପାଖରେ ପରିଚିତ, ସୁମନ୍ତ ମିଶ୍ର ନାମରେ । ନାମଟି ଯେପରି ସୁନ୍ଦର, ଦେଖିବାକୁ ସେହିପରି ସୁଶ୍ରୀ, ଆଉ କାମଗୁଡ଼ିକ ମଧ୍ୟ ଚମତ୍କାର ।

ଜନ ସମାଜରେ ସୁମନ୍ତ ମିଶ୍ର, ଡିରେକ୍ଟରଙ୍କର ବିଶ୍ୱସ୍ତ କର୍ମଚାରୀ । କିନ୍ତୁ ପ୍ରକୃତରେ ସେ ମିସ ସ୍ୱପ୍ନା ଦେବୀଙ୍କର କର୍ମଚାରୀ ନୁହଁନ୍ତି । ସେ ହେଉଛନ୍ତି ମିସ୍ ସ୍ୱପ୍ନା ଦେବୀଙ୍କ ଆରାଧ୍ୟ

Digitized by srujanika@gmail.com

ଦେବତା । ନାଗ ଜୀବନର ସବୁ କିଛି । ସ୍ୱପ୍ନା ଦେବୀଙ୍କ ପାଖରେ ସୁମନ୍ତ ମିଶ୍ର ହେଉଛନ୍ତି ବନ୍ଧୁ ଓ ଶିକ୍ଷକ, ଶେଷରେ ସ୍ୱାମୀ ମଧ୍ୟ । ବହୁତ ଦିନର ପ୍ରତୀକ୍ଷା ପରେ ଆଜି ଦୁଇଟି ଜୀବନର ମିଳନର ସ୍ଥଳ ହୋଇଛି ମିଶ୍ର ଇନ୍‌ଷ୍ଟିଚ୍ୟୁଟର ଝରକା ଉଣ୍ଟି ବଗିଚା ।

କିନ୍ତୁ ଏ ସମସ୍ତ ଘଟଣା କାହାର ନଜରରେ ପଡ଼ିନ । କିଏ ବା କାହିଁକି ଏ ସବୁକୁ ନଜର ଦେବେ । ଏଠାକୁ ସଂସ୍ତେ ଆସନ୍ତି କପର ଭଲ ପାଠ ପଢ଼ି ଭଲ ଗବେଷଣା କରି ଡିଗ୍ରୀ ପାଇବେ । କିନ୍ତୁ ମୋ ଗବେଷଣା ଭିତରେ ଡ଼ିଗ୍ରୀ ପାଇବ ବା ନାହିଁ ସନ୍ଦେହ । ତେବେ ଗୋଟିଏ ଅନ୍ତୁ ସଫଳତା ଲାଭ କରି ପାରିଛି । ସମସ୍ତ ପ୍ରମାଣର ସହିତ ଅପରାଧୀକୁ ଧରି ଆପଣଙ୍କ ହାତରେ ସମର୍ପି ଦେଇ ପାରିବି ।

ଅପଣ କାଲି ଦିନ ଏଗାରଟା ବେଳେ କେତେଜଣ ପୋଲିସ ଅଫିସରଙ୍କୁ ନେଇ ଆମ ଇନ୍‌ଷ୍ଟିଚ୍ୟୁଟ୍‌କୁ ଆସନ୍ତୁ । କିନ୍ତୁ ତା ପୂର୍ବରୁ ଆପଣ ଫୋନ୍ କରି ଅମ ଡିରେକ୍ଟର ମିସ୍ ସ୍ୱପ୍ନା ଦେବୀଙ୍କୁ ଜଣାଇ ଦିଅନ୍ତୁ ଯେ ମିଶ୍ର ଇନ୍‌ଷ୍ଟିଚ୍ୟୁଟରେ ଅପରାଧୀ ଛଦ୍ମବେଶରେ ଥିବା ଖବର ମୁଁ ପାଇଛି । ତେଣୁ ଦିନ ଏଗାରଟା ସମୟରେ ମୁଁ ଇନ୍‌ଷ୍ଟିଚ୍ୟୁଟ୍‌ର ସମସ୍ତ ସ୍ଥାନ ଓ ସମସ୍ତ ବ୍ୟକ୍ତିଙ୍କୁ ଦେଖିବି । ତା ପରେ ଆପଣ ଏଠାକୁ ଆସିଲେ ମୁଁ ସମସ୍ତ ପ୍ରମାଣ ସହ ସହିତ ଅପରାଧୀକୁ ଧରାଇ ଦେବି ।

Digitized by srujanika@gmail.com

ଆଜି ଗୋଟିଏ କଥା, ଆପଣଙ୍କୁ କହିବି । ଯାହାକି ଆପଣ ବିଶ୍ୱାସ କରି ପାରିବେନି । ଆପଣ ଏକା କାହିଁକି, ଏ ଦୁନିଆରେ କେହି ଜାଣିଲେ ମଧ୍ୟ ବିଶ୍ୱାସ କରିବେନି । ସେ କଥା ଆଜି ମୁଁ ଆପଣଙ୍କୁ କହୁଛି । କଳ୍ପନା ନୁହେଁ କି ମନ ଗଢା ମିଛ କଥା ନୁହେଁ, ନିରଟ ସତ କଥା । ଅବଶ୍ୟ କାଲି ସମସ୍ତ ପ୍ରମାଣ ପାଇଲେ ନିଶ୍ଚୟ ବିଶ୍ୱାସ କରିବେ ।

ସୁମନ୍ତ ମିଶ୍ର ହେଉଛନ୍ତି ଅପରାଧୀ । କିନ୍ତୁ ସୁମନ୍ତ ମିଶ୍ର କିଏ ଜାଣନ୍ତି ? ସମସ୍ତଙ୍କୁ ବୋକା ବନେଇ ଯେ ଜୀବିତ ଥାଇ ଧରା ପୃଷ୍ଠରୁ ବିଦାୟ ନେଇଛନ୍ତି, ସେହି ହେଉଛନ୍ତି ଅପରାଧୀ । ଆମର ନମସ୍ୟ ଓ ଚିର ପରିଚିତ ଜାତୀୟ ସମ୍ମାନରେ ବିଭୂଷିତ ଡକ୍ଟର ମିଶ୍ର ଏବେ ମଧ୍ୟ ଜୀବିତ । ଯେ କି ବିଜ୍ଞାନର ଗୁପ୍ତ ରହସ୍ୟକୁ ଲୋକ ଲୋଚନକୁ ଆଣି ନିଜେ ଲୁଚି ରହିଛନ୍ତି । ସେହି ଡକ୍ଟର ମିଶ୍ର ହେଉଛନ୍ତି ଛଦ୍ମବେଶୀ ସୁମନ୍ତ ମିଶ୍ର । ସୁମନ୍ତ ମିଶ୍ର ହେଉଛନ୍ତି ଅପରାଧୀ । ଆପଣ ମୋ କଥା ବିଶ୍ୱାସ କରିପାରୁ ନଥିବେ । କିନ୍ତୁ ନିଜ ଆଖିକୁ ତ ଆପଣ ଅବିଶ୍ୱାସ କରି ପାରିବେନି, କାଲି ସେହି ଶୁଭ ମୁହୂର୍ତ୍ତକୁ ଆପଣ ଅପେକ୍ଷା କରନ୍ତୁ । କାଲି ଦିନ ଏଗାରଟା ସମୟକୁ ବୁଝିବି ରହିଲା । ଆଜି ସମସ୍ତ ସାକ୍ଷାତରେ ଜାଣିପାରିବେ । ରହୁଛି । ଇତି

ଆପଣଙ୍କର,

ସୁଧାଂଶୁ ଘୋଷ

ସିନପୁର ରିସର୍ଚ୍ଚ ଅଫିସର ଡେଲଟାରଶ୍ମି ବିଭାଗ

Digitized by srujanika@gmail.com

ଆଇ. ଜ. ସାହେବ ଏକା ନିଶ୍ୱାସକେ ଚିଠି ପଢ଼ି ଥକକ୍କା ହୋଇ ବସି ରହିଲେ । ନିଜ ଆଖି, କାନକୁ ବିଶ୍ୱାସ କରି ପାରୁ ନଥାନ୍ତି । ମୁଣ୍ଡ ଭିତର ଗୋଳମାଳ ହୋଇ ଯାଉଥାଏ, ପାଦ ତଳେ ମାଟି ଥିଲା ପରି ଲାଗୁ ନଥାଏ । ଏ ଘଟଣା କଣ ସତ୍ୟ ହୋଇପାରେ ନା ପାଗଳର ପ୍ରଳାପ ? ଯଦି ଏ କଥା ସତ୍ୟ ହୁଏ, ତେବେ ଈଶ୍ୱର କଳ୍ପନା ବି ମିଛ ନୁହେଁ । ଜାଣିବାକୁ ହେବ ଯେ ଜଣେ ବୈଜ୍ଞାନିକ ସବୁ କରି ପାରେ । ପ୍ରକୃତରେ କଣ ଡକ୍ଟର ମିଶ୍ର ଜୀବିତ ? ଆଜି ସେ ପୁଣି ହେଉଛନ୍ତି ଅପରାଧୀ ? ଏହା କଣ ସମ୍ଭବ ? ଦେଖାଯାଉ କାଲର ସେ ମୁହୂର୍ତ୍ତ ସତ୍ୟ ନା କଳ୍ପନା । ଶୁଭ କି ଅଶୁଭ ।

× × ×

ମିଶ୍ର ଇନଷ୍ଟିଚ୍ୟୁଟ । ଡିରେକ୍ଟର ଡକ୍ଟର ମିସ୍ ସ୍ୱପ୍ନା ଦେବୀଙ୍କ ରୁମ୍‌ରେ ଆଇ. ଜ. ସାହେବ ବସି କଥାବାର୍ତ୍ତା ହେଉଥାନ୍ତି । ଆଇ.ଜ. ସାହେବ କିଛି ସମୟ ସ୍ୱପ୍ନା ଦେବୀଙ୍କ ସହିତ କଥାବାର୍ତ୍ତା ହେବା ପରେ ସୁଧାଂଶୁ ଘୋଷଙ୍କୁ ଡାକଦେବା ପାଇଁ କହିଲେ । ସ୍ୱପ୍ନା ଦେବୀ ସୁଧାଂଶୁ ଘୋଷଙ୍କୁ ଡକାଇଲେ ।

ଅଳ୍ପ ସମୟ ଭିତରେ ସୁଧାଂଶୁ ଘୋଷ ଆସି ପହଞ୍ଚିଗଲେ । ହାତରେ ତାଙ୍କର ଗୋଟିଏ ଚମଡ଼ା ବ୍ୟାଗ । ମୁହଁରୁ ଝରି ପଡୁଛି ଦରଫୁଟା ହସ । ଦେହରେ ଦାମିକା ସୁଟ୍ । ପୋଷାକ ପତ୍ରରୁ ଫୁଟି ବାହାରୁଛି ସାହେବ ଢଙ୍ଗର ଆଦବ କାଇଦା । ସେ ସ୍ୱପ୍ନା ଦେବୀ ଓ ଆଇ.ଜ. ସାହେବଙ୍କୁ ନମସ୍କାର କରିବା ପରେ ସ୍ୱପ୍ନା ଦେବୀ ତାଙ୍କୁ ଆସନ ଗ୍ରହଣ କରିବାକୁ କହିଲେ ।

Digitized by srujanika@gmail.com

କିଛି ସମୟ ନୀରବ ରହିବା ପରେ ଆଇ.ଜି. ସାହେବ ନିଜ ଚମଡ଼ା ବ୍ୟାଗ୍‌ରୁ ଲଫାପାଟି କାଢି ହାତରେ ଧରି ପଚାରିଲେ, ସୁଧାଂଶୁ ବାବୁ, ଆପଣ ଏ ଚିଠି ଦେଇଥିଲେ ?

ସୁଧାଂଶୁ ବାବୁ ହସି ଉତ୍ତର ଦେଲେ—ହଁ, ସେ ଚିଠି ମୁଁ ଦେଇଛି ।

"ଆପଣ ଏ ଚିଠିରେ ଯାହା ସବୁ ଲେଖିଛନ୍ତି ସେ ସମସ୍ତ ବକ୍ତବ୍ୟ କଣ ସତ୍ୟ ?"

"ମୋର ବିଶ୍ୱାସ, ଯାହା ସବୁ ମୁଁ ଲେଖିଛି, ସେ ସମସ୍ତ ସତ୍ୟ ଘଟଣା ଓ ପ୍ରମାଣିତ ମଧ୍ୟ ।"

"ଆପଣ ସମସ୍ତ ପ୍ରମାଣ ମୋତେ ଦେଖାଇ ପାରିବେ ?"

"ହଁ, ସେ ସମସ୍ତ ପ୍ରମାଣ ମୁଁ ମୋ ହାତ ବ୍ୟାଗରେ ନେଇ ଥିଛି ଅପଣ କହିଲେ ବର୍ତ୍ତମାନ ମଧ୍ୟ ମୁଁ ଦେଖାଇ ପାରିବ ।"

ଆଇ.ଜି. ସାହେବ କିଛି ସମୟ ଚିନ୍ତା କରିବା ପରେ ସ୍ୱପ୍ନା ଦେବୀଙ୍କୁ ପଚାରିଲେ, "ସୁମନ୍ତ ବାବୁ କେଉଁଠାରେ ଅଛନ୍ତି ?"

ସ୍ୱପ୍ନା ଦେବୀ କହିଲେ, "ସୁମନ୍ତ ବାବୁ ଏହି ପାଖଘରେ କାମ କରୁଛନ୍ତି । ସେ ସବୁବେଳେ କର୍ମ ବ୍ୟସ୍ତ ।"

"ଆପଣ ଟିକଏ ସୁମନ୍ତ ବାବୁଙ୍କୁ ଡକାନ୍ତୁ ।"

Digitized by srujanika@gmail.com

ଆଚ୍ଛା ଡାକୁଛି କହି ସ୍ୱପ୍ନା ଦେବୀ ବେଲ୍ ଚିପିଲେ । ଅଳ୍ପ ଟିକଏ ସମୟ ପରେ ସୁମନ୍ତ ବାବୁ ଆସିଲେ ।

ସୁମନ୍ତ ବାବୁ ଆସି ଆଇ. ଜି. ସାହେବଙ୍କୁ ନମସ୍କାର କଲେ । କିନ୍ତୁ ଆଇ.ଜି.ସାହେବ ଗୃହିଁ ରହିଥାନ୍ତି ସୁମନ୍ତ ମିଶ୍ରଙ୍କର ମୁହଁକୁ । ଏତେ ସୁନ୍ଦର, ପ୍ରଶାନ୍ତ ଚେହେରା ଭିତରେ ପୁଣି 'ଅପରାଧୀ' ଅଛି ! ଏହା କଣ ସମ୍ଭବ ! ନିଜ ମନ କଥା ମନରେ ରଖି ଆଇ.ଜି. ସାହେବ ସୁମନ୍ତ ମିଶ୍ରଙ୍କୁ ପାଖ ଚେୟାରରେ ବସିବାକୁ କହିଲେ ।

ସୁମନ୍ତ ବାବୁ ଯେଉଁପରି ପ୍ରଶାନ୍ତ ବଦନରେ ଚେୟାରଟିରେ ବସି ପଡ଼ିଲେ । ମୁହଁରେ ମୃଦୁ ହସ ଲାଗି ରହିଛି ।

ଆଇ.ଜି. ସାହେବ ସୁମନ୍ତ ବାବୁଙ୍କ ମୁହଁକୁ ଗୃହିଁ ପଚାରିଲେ, "ଆପଣ କେତେବର୍ଷ ହେଲା ଏଠାରେ ଗୃହରକ୍ଷୀ କଲେଣି ?"

ସୁମନ୍ତ ବାବୁ ହସି ଉତ୍ତର ଦେଲେ, "ପ୍ରାୟ ଛଅ ବର୍ଷ ହେବ ।"

ଆପଣ କଣ ଛଅ ବର୍ଷ ହେଲା ଡିରେକ୍ଟରଙ୍କର ବିଶ୍ୱସ୍ତ ବିଶ୍ୱସ୍ତ ଗୃହରକ୍ଷୀ ରୂପେ କାର୍ଯ୍ୟ କରୁଛନ୍ତି ନା ଆଉ କିଛି କାମ କରୁଥିଲେ ?"

ମୁଁ ଏଠାରେ ପ୍ରଥମେ ଗୃହରକ୍ଷୀ କଲାବେଳେ ଟାଇପ୍ କରିବା, ଅଫିସ କାଗଜପତ୍ର ଦେଖିବା ଏହି କାମ କରୁଥିଲି ।

Digitized by srujanika@gmail.com

ଏହି କାମ କରିବାର ଦୁଇ ବର୍ଷ ପରେ-ଡ଼ିରେକ୍ଟର ମହାଶୟ। ମୋ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କର ସହକାରୀ କର୍ମକର୍ତ୍ତା-କାର୍ଯ୍ୟଭାର ମୋତେ ଦେଲେ। ଆଜକୁ ଦୁଇବର୍ଷ ହେବ, ମୁଁ ସହକାରୀ କର୍ମକର୍ତ୍ତା ରୂପେ କାର୍ଯ୍ୟ କରି ଆସୁଛି।

ସୁମନ୍ତ ବାବୁ, ଆପଣ ଜାଣନ୍ତି, ମୁଁ କାହିଁକି ଆଜି ଏ ଗବେଷଣାଗାରକୁ ଆସିଛି। ଗବେଷଣାଗାରରେ ପୁଣି ମୋର କାମ ଅଛି। କାମଟା କଣ ଜାଣନ୍ତି? ଜାଣିଲେ ବୋଧେ ଚମକି ପଡ଼ିବେ। ଆପଣଙ୍କ ନାଁରେ ମୋ ପାଖରେ ବହୁତ ଅଭିଯୋଗ ଅଛି, ଅପଣଙ୍କୁ ମୁଁ ସନ୍ଦେହ କରୁଛି। ସେ ସନ୍ଦେହ ମିଛ କି ସତ ବୁଝିବା ପାଇଁ ଆଜି ଏଠାକୁ, ଅବେଳାଟାରେ ଆସି ପହଞ୍ଚିଛି। ପ୍ରଥମ ଅଭିଯୋଗ ଅପଣଙ୍କ ନାମରେ ସୁଧାଂଶୁ ବାବୁ କରିଛନ୍ତି। ସେ ସମସ୍ତ ପ୍ରମାଣ ରଖିଛନ୍ତି ବୋଲି କହୁଛନ୍ତି। ସେ ପ୍ରମାଣ ସତ୍ୟ କି ନୁହେଁ, ଏହିଠାରେ ଆପଣଙ୍କ ସାମନାରେ ବିଚାର କରାଯିବ। ସୁଧାଂଶୁ ବାବୁ ଯଦି ମିଛ କହୁଥିବେ, ତେବେ ଆପଣ ଅଭିଯୋଗ କରି ପାରନ୍ତି। ଆପଣ ବସି ଶୁଣନ୍ତୁ। ସୁଧାଂଶୁ ବାବୁ ଆପଣ ଏଥର କୁହନ୍ତୁ ସୁମନ୍ତ ବାବୁଙ୍କୁ ଆପଣ କାହିଁକି ସନ୍ଦେହ କଲେ। ଓ କପରି ସନ୍ଦେହ କଲେ।"

ସୁଧାଂଶୁ ବାବୁ ଅଳ୍ପ ହସି ଗମ୍ଭୀର ସ୍ୱରରେ କହିଲେ ଅଜକୁ ଦୀର୍ଘ ଚାରି ବର୍ଷ ହେଲା ମୋର ସନ୍ଦେହାନ ସୁମନ୍ତ ବାବୁଙ୍କ ପଛରେ ଘୁରି ବୁଲୁଥିଲା। ମୋର ସେ ସନ୍ଦେହ ଆଜି ପ୍ରକୃତ ରୂପ

Digitized by srujanika@gmail.com

ଧରିପରିଲ । ତାହାର ପ୍ରଥମ ପ୍ରମାଣ ହେଉଛି ଏହି ଛବିଟି ଫଟୋ । ଏହା କହି ନିଜ ହାତ ବ୍ୟାଗରୁ ଛବିଟି ଗ୍ରେଟ ଫଟୋ ଆଇ.ଜି ସାହେବଙ୍କ ହାତକୁ ବଢ଼ାଇଦେଲେ । ଆପଣ ଏ ଫଟୋ ଛବିଟି ମିଶାଇ ଭଲ କରି ଦେଖନ୍ତୁ, ଫଟୋ ଛବିଟିରେ ସାମଞ୍ଜସ୍ୟ ଅଛି କି ନାହିଁ । ଫଟୋ ଗୁଡ଼ିକ ବିଭିନ୍ନ ଅବସ୍ଥାରେ ଓ ବିଭିନ୍ନ ପୋଷାକରେ ନିଆ ଯାଇଛି । କିନ୍ତୁ ଏ ଫଟୋଟି ଯେ ଜଣ କର, ଏଥିରେ କିଛି ସନ୍ଦେହ ନାହିଁ । ପ୍ରଥମ ଫଟୋଟି ଯେ ଡକ୍ଟର ମିଶ୍ରଙ୍କର, ଆପଣ ନିଶ୍ଚୟ ଜାଣି ପାରୁଥିବେ । ଫଟୋରେ ଡକ୍ଟର ମିଶ୍ରଙ୍କ ଓଠ ତଳେ ଗୋଟିଏ କଳା ଦାଗ ଅଛି । ଆଉ ଦୁଇଟି ଫଟୋ ମଧ୍ୟ ଦେଖନ୍ତୁ ଠିକ୍ ସେହି ଜାଗାରେ କଳା ଦାଗ ଅଛି । ସେ କଳା ଦାଗ ନୁହେଁ ଗୋଟିଏ କଳାଜାଇ । ବର୍ତ୍ତମାନ ସୁମନ୍ତ ବାବୁଙ୍କ ମୁହଁଟି ଦେଖନ୍ତୁ ଠିକ୍ ସେହି ଜାଗାରେ କଳାଜାଇଟି ଅଛି । ଫଟୋ ଉଠାଇଲା ବେଳେ କଳାଜାଇଟିକୁ ଲୁଚାଇବାକୁ ସୁମନ୍ତ ବାବୁ ପୂରା ପୂରି ଭୁଲି ଯାଇଛନ୍ତି । କିନ୍ତୁ ଆଜି ସାମାନ୍ୟ କଳାଜାଇଟି ପାଇଁ ସୁମନ୍ତ ବାବୁ ଡକ୍ଟର ମିଶ୍ର ବୋଲି ସ୍ପଷ୍ଟ ଭାବରେ ପ୍ରମାଣିତ ହୋଇ ଯିବେ । ସୁଧାଂଶୁ ବାବୁଙ୍କ କଥା ଶୁଣି ସମସ୍ତଙ୍କର ସନ୍ଦେହୀ ଚକ୍ଷୁ ଦୁଇ ମିନଟ୍ ପାଇଁ ସୁମନ୍ତ ମିଶ୍ରଙ୍କ ମୁହଁ ଉପରେ ଘୂରି ଆସିଲା । ସୁମନ୍ତ ବାବୁଙ୍କ ମୁହଁରେ ଠିକ୍ ସେହି ଜାଗାରେ କଳାଜାଇଟି ଅଛି । କିନ୍ତୁ ସୁଧାଂଶୁ ବାବୁଙ୍କ କଥା ଶୁଣିତ ସୁମନ୍ତ ବାବୁଙ୍କ ମୁହଁ ଶୁଖି-ଯାଇନ । ସେ ତ ଝୁପିମନରେ ବସି ସମସ୍ତ ଶୁଣୁଛନ୍ତି । ପୂର୍ବପରି ତ ଏବେ ବି ମୁହଁରେ ହସ ଲାଗି ରହିଛି । ସମସ୍ତେ ଭାବୁଛନ୍ତି— ସୁମନ୍ତ ମିଶ୍ର ଯଦି ଡକ୍ଟର ମିଶ୍ର, ତେବେ ସେ ଏପରି ଛଦ୍ମବେଶରେ

Digitized by srujanika@gmail.com

ରହିବାର କାରଣ କଣ ? ସେମାନଙ୍କ ଗ୍ରନ୍ଥରେ ପୃଷ୍ଠାଚ୍ଛେଦ ପକାଇ ସୁଧାଂଶୁ ପୁଣି କହିବାକୁ ଆରମ୍ଭ କଲେ ।

"ଦ୍ୱିତୀୟ ପ୍ରମାଣଟି ଶୁଣନ୍ତୁ ଆଇ. ଜି. ସାହେବ ! ଆପଣଙ୍କର ମନେଥିବ ଡ଼କ୍ଟର ମିଶ୍ରଙ୍କ ମୃତ୍ୟୁପରେ ଜଣେ ଓଭରସିଅରଙ୍କର ମୃତ୍ୟୁ ହୋଇଥିଲା । ସେ ଓଭରସିଅର ଆତ୍ମହତ୍ୟା କରିଥିଲେ ବୋଲି ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା । ଓଭରସିଅର ଜଣକ କାହିଁକି ଆତ୍ମହତ୍ୟା କଲେ, ସେ ସମସ୍ତ ବିଷୟ ପ୍ରକାଶ ପାଇଥିଲା । ଓଭରସିଅର ଜଣକ ତାଙ୍କ ମୃତ୍ୟୁ ପୂର୍ବରୁ ତାଙ୍କ ଜୀବନର ଘଟଣାବଳୀ ଲେଖି ଖଣ୍ଡିଏ ପତ୍ର ଏକ ସମ୍ବାଦପତ୍ର ସମ୍ପାଦକଙ୍କ ପାଖକୁ ଲେଖିଥିଲେ । ସେ ଚିଠିର ନକଲ ସେଥିରେ ପ୍ରକାଶିତ ହୋଇଥିଲା । ଉକ୍ତ ଓଭରସିଅର ଆତ୍ମହତ୍ୟା କରିଥିଲେ ସତ୍ୟ । କିନ୍ତୁ ତାଙ୍କ ଶବ ଉଦ୍ଧାର କରିପାରିଥିଲା କି ? ଗୋଟିଏ ଲୋକ ଆତ୍ମହତ୍ୟା କଲା, ଅଥଚ ତା ଶବ ମିଳିଲାନି । ମୃତ ଦେହ ପାଇଁ ମଧ୍ୟ କେହି ତତ୍ପର ହୋଇ ନାହାଁନ୍ତି । ସେ ଖୋଜ ଖବର, ପୋଲିସ କି ତାଙ୍କ ନିଜ ଲୋକେ କେହି ରଖିଲେନି । ଯେପରି କି ତାଙ୍କର ମୃତ ଶରୀରଟା ଅନ୍ତର୍ଦ୍ଧାନ ହୋଇଗଲା ।

ଆଉ ଗୋଟିଏ ଘଟଣା ସମସ୍ତଙ୍କର ମନେଥିବ । ଡକ୍ଟର ମିଶ୍ରଙ୍କର ଯେଉଁ ମୃତ ଶରୀର ମିଳିଥିଲା, ସେ ଶରୀରଟିର ମସ୍ତକଟି ନଥିଲା । ତେବେ ସେ ଶରୀରଟି ଯେ ଡକ୍ଟର ମିଶ୍ରଙ୍କର ତାର ପ୍ରମାଣ କଣ ଦେଖିଲେ ? ଆପଣ ହୁଏତ କହିବେ, ସେ ମୃତ

Digitized by srujanika@gmail.com

ଶରୀରଟି ଉତ୍କଳ ମିଶ୍ରଙ୍କର ପୋଷାକ ଦ୍ୱାରା ଆଚ୍ଛାଦିତ ଥିଲା ଏବଂ ଉତ୍କଳ ମିଶ୍ରଙ୍କର ହାତଲେଖା ଦୁଇଖଣ୍ଡି ଚିଠି ଆପଣମାନେ ପାଇଥିଲେ । କିନ୍ତୁ ଏହି କଥାରେ କଣ ଏତେ ଶୀଘ୍ର ବିଶ୍ୱାସ କରିଦେବା ଉଚିତ ଥିଲା ? ଆଜି ଆପଣମାନଙ୍କ ଆଗରେ ସ୍ପଷ୍ଟ ଭାବରେ ପ୍ରମାଣିତ କରିପାରେ ଯେ ସେ ମୃତ ଶରୀର ଉତ୍କଳ ମିଶ୍ରଙ୍କର ନୁହେଁ, ସେ ଶରୀରଟି ମୃତ ଓଭରସିଅରର । ପ୍ରମାଣ ଆପଣଙ୍କୁ ପରେ ଜଣାଇବି, ବର୍ତ୍ତମାନ କହିଦିଏ ସୁମନ୍ତ ମିଶ୍ରଙ୍କୁ ଉକ୍‌ଟର ମିଶ୍ର ବୋଲି ସନ୍ଦେହ କାହିଁକି କଲି ଓ ତାଙ୍କ ପ୍ରକୃତ ପରିଚୟ କିପରି ପାଇଲି । ସେହି କାରଣଗୁଡ଼ିକ ଏଠାରେ କହିବା ପୂର୍ବରୁ ମୁଁ ଆମ ଡ଼ିରେକ୍‌ଟର ମହାଶୟଙ୍କ ଠାରୁ କ୍ଷମା ମାଗି ନେଉଛି ।

ପ୍ରଥମେ ମୋ ମନରେ ସନ୍ଦେହ ଆଣି ଦେଇଥିଲା, ସୁମନ୍ତ ବାବୁଙ୍କ ସହିତ ସୁପ୍ରା ଦେବୀଙ୍କର ଅବାଧ ମିଳାମିଶା । ଜଣେ ଚଳନ୍ତା କର୍ମଚାରୀ ସହିତ ଡ଼ିରେକ୍ଟର ମହାଶୟଙ୍କର ଏପରି ସ୍ନେହ ପୂର୍ଣ୍ଣ ବ୍ୟବହାର ଅସମ୍ଭବ । ମୁଁ ପରଦା ଆଡ଼ୁଆଳରେ ଥାଇ ସେମାନଙ୍କର ଖିଲ ଖିଲ ହସ, ଚୁପ୍ ଚୁପ୍ କଥା ଅନେକବାର ଶୁଣିବାକୁ ପାଉଛି । କେହି ନଥିବା ସମୟରେ ଡ଼ିରେକ୍ଟର ଓ ସୁମନ୍ତ ମିଶ୍ର ଖୁବ୍ ବଡ଼ ବଡ଼ ରିସର୍ଚ୍ଚ ବିଷୟରେ କଥାବାର୍ତ୍ତା ହୁଅନ୍ତି । କେତେଥର ଗବେଷଣା ବିଷୟରେ ଆମେ ସମସ୍ତେ କଥାବାର୍ତ୍ତା ହେଉଥିଲା ସମୟରେ ସୁମନ୍ତ ବାବୁ ଅନେକ ଯୁକ୍ତି ବାଢ଼ନ୍ତି । ଯାହାକି ଜଣେ ବୈଜ୍ଞାନିକ ବିନା ଅନ୍ୟ କେହି କହିବା ଅସମ୍ଭବ । ତା ପରେ ମୋର ସୁମନ୍ତ ବାବୁଙ୍କ ଉପରେ ସନ୍ଦେହ

Digitized by srujanika@gmail.com

ହୋଇଛୁ । ସୁମନ୍ତ ବାବୁ କେଉଁଠାରେ ରହୁଛନ୍ତି, ସେ ବିଷୟରେ ଅନୁସନ୍ଧାନ କଲି । କିଛି ଦିନ ଦୌଡ଼ା ଦୌଡ଼ି, ଖୋଜା ଖୋଜି କରିବା ପରେ ସୁମନ୍ତ ବାବୁଙ୍କ ରହିବା ଯାଗାଟି ଆବିଷ୍କାର କଲି । ସୁମନ୍ତ ବାବୁ କାହା ଘରେ ରହନ୍ତି, ଜାଣନ୍ତି ? ସେ ଘରଟି ସେହି ମୃତ ଓଭରସିଅରଙ୍କର ଘର । ସେଠାରୁ ବୁଝି ଜାଣିଲି ଯେ ଓଭରସିଅରଙ୍କର ଶଳା ହେଉଛନ୍ତି ସୁମନ୍ତ ମିଶ୍ର । ସୁମନ୍ତ ବାବୁଙ୍କ ଭଉଣୀ ଯଦି ଓଭରସିଅର ବାବୁ ହେଲେ ତେବେ ସୁମନ୍ତ ମିଶ୍ରଙ୍କ ଜନ୍ମସ୍ଥାନ କେଉଁଠି ? ତାଙ୍କର ଆଉ କିଏ ସବୁ ଅଛନ୍ତି । ଏ ସମସ୍ତ ବିଷୟ ଜାଣିବା ପାଇଁ ମୁଁ ଆଗ୍ରହୀ ହୋଇ ଉଠିଲି ।

ତେଣୁ ସୁମନ୍ତ ମିଶ୍ରଙ୍କ ସହିତ ଦିନେ କଥାବାର୍ତ୍ତା ହେବା ସମୟରେ ତାଙ୍କ ଜନ୍ମସ୍ଥାନ କେଉଁଠି ପଚାରି ବୁଝିଲି । ସେ କହିଲେ ତାଙ୍କ ଜନ୍ମସ୍ଥାନ ବାଲେଶ୍ୱର ଜିଲ୍ଲା କେଦାରପୁର ଗ୍ରାମରେ । ତାଙ୍କର ନିଜର ଆଉ କେହି ନାହାଁନ୍ତି ।

ତା ପରେ ମୁଁ କିଛିଦିନ ଛୁଟି ନେଇ ବାଲେଶ୍ୱରକୁ ଗଲି । ସେଠାରୁ ବୁଝିଲି ସୁମନ୍ତ ବାବୁ ଯେଉଁ ଠିକଣା ଦେଇଥିଲେ ସେହି ଠିକଣାରେ ସେଠାରେ କେହି କେବେ ନଥିଲେ କି ବର୍ତ୍ତମାନ ମଧ୍ୟ କେହି ନାହାଁନ୍ତି । ତେଣୁ ମୋର ସନ୍ଦେହ ବଢ଼ିଗଲା । କାରଣ ସୁମନ୍ତ ନାମରେ ସେ ଗ୍ରାମରେ ପିଲା କେହି କେବେ ନଥିଲେ । ଏଥିରୁ ମୁଁ ନିଶ୍ଚିତ କରି ଜାଣିଲି ଯେ ସୁମନ୍ତ ବାବୁ ତାଙ୍କର ପ୍ରକୃତ ପରିଚୟ ଲୁଚାଉଛନ୍ତି । ତାପରେ ସୁମନ୍ତ ବାବୁଙ୍କ ସମ୍ବନ୍ଧରେ ଆହୁରି କିଛି ପ୍ରମାଣ ସଂଗ୍ରହ ପାଇଁ ମୁଁ ଲାଗିପଡ଼ିଲି । କିଛିଦିନ ପରେ ଫଟୋଷ୍ଟୁଡ଼ିଓରୁ ଡାକ୍ତରେ

Digitized by srujanika@gmail.com

ମିଶ୍ରଙ୍କର ଗୋଟିଏ ପୁରୁଣା ଫଟୋ ପାଇଲି । ସେ ଫଟୋଟି ଆଣିବା ପରେ ଅଟୋମେଟିକ କ୍ୟାମେରା ସାହାଯ୍ୟରେ ସୁମନ୍ତ ବାବୁଙ୍କର ବିଭିନ୍ନ ପୋଷାକରେ ଥିବା ଅବସ୍ଥାର ଫଟୋ ଉଠାଇ ନେଲି । ଫଟୋଗୁଡ଼ିକ ମିଶାଇ ଦେଖିଲି ଯେ ଫଟୋ ତିନୋଟିର କଳା ଦାଗଟି ଠିକ୍ ଗୋଟିଏ ଯାଗାରେ ରହିଛି । ଗୋଟିଏ ଯାଗାରେ ଏକପ୍ରକାର କଳାଯାଇ ଅଛି । ଆଜି ମଧ୍ୟ ଫଟୋ ତିନୋଟିକୁ ନିରୀକ୍ଷଣ କରି ଦେଖିଲେ ଯେ କେହି ଲୋକ ଜାଣି-ପାରିବ ଯେ ଫଟୋ ତିନୋଟି ଗୋଟିଏ ଲୋକର । ଏଥିରେ କିଛି ଅଳ ସନ୍ଦେହ କରିବାର ନାହିଁ । ସୁମନ୍ତବାବୁ ଯେ ଆମର ସର୍ବଶ୍ରେଷ୍ଠ ବୈଜ୍ଞାନିକ ଡକ୍ଟର ମିଶ୍ର ଏଥିରେ ଆଉ ପ୍ରମାଣର ଅଭାବ ରହିଲା କେଉଁଠି ? ବର୍ତ୍ତମାନ ଆମ ଡିରେକ୍ଟର ମହାଶୟ ନିଶ୍ଚୟ ସ୍ୱୀକାର କରିବେ ଯେ ସୁମନ୍ତ ମିଶ୍ର ହେଉଛନ୍ତି ସୁପ୍ରତିଷ୍ଠିତ ବୈଜ୍ଞାନିକ ଡକ୍ଟର ଦେବପ୍ରସାଦ ମିଶ୍ର ।

ଡକ୍ଟର ମିଶ୍ର ବିଷ୍ଣୁ ଥାଉ ଥାଉ ଆମ ଦେଶରେ ତାଙ୍କର ଶ୍ରାଦ୍ଧଦିବସ ପାଳନ କରାଯାଉଛି, ତାଙ୍କର ସ୍ୱର୍ଗତ ଆତ୍ମା ପ୍ରତି ଶ୍ରଦ୍ଧାଂଜଳି ଅର୍ପଣ କରାଯାଉଛି, ଏହାଠାରୁ ବିଶେଷ ଦୁଃଖର ବିଷୟ ଆଉ କଣ ଥାଇ ପାରେ ? ମୋର ଆଶା, ଏଥର ସୁମନ୍ତ ବାବୁ ନିଜର ପ୍ରକୃତ ପରିଚୟ ଦେଇ ସମସ୍ତଙ୍କ ସନ୍ଦେହ ଦୂର କରିବେ । ସମସ୍ତଙ୍କ ଆଗରେ କୁହନ୍ତୁ ସୁମନ୍ତ ବାବୁ, ସେ ଡକ୍ଟର ମିଶ୍ର କି ନୁହନ୍ତି ?

ଯାହା ସବୁ ମୁଁ ପ୍ରମାଣ ଯୋଗାଇଲି, ସେ ସମସ୍ତ ମିଥ୍ୟା କି ସତ୍ୟ, ତାହା ଭଲ କରି କହି ପାରିବେ ଆମର ଚିର ପରିଚିତ

Digitized by srujanika@gmail.com

ସୁମନ୍ତ ବାବୁ ଓରଫ ଡ଼କ୍ଟର ମିଶ୍ର । ସୁମନ୍ତ ବାବୁଙ୍କ କଥାକୁ ସତ୍ୟ କି ମିଥ୍ୟା ବୋଲି ପ୍ରମାଣିତ କରି ପାରିବେ ଆମର ଡ଼ିରେକ୍ଟର ସ୍ୱପ୍ନା ଦେବୀ । ତେବେ ସେମାନେ ପ୍ରମାଣ କରିବା ପୂର୍ବରୁ ମୁଁ ମୋ ବକ୍ତବ୍ୟ ଶେଷ କରେ ! ଡ଼କ୍ଟର ମିଶ୍ରଙ୍କୁ ମୁଁ ଅପରାଧୀ ବୋଲି କାହିଁକି ସନ୍ଦେହ କଲି ?

ଡ଼କ୍ଟର ମିଶ୍ରଙ୍କ ହୃଦୟ ଥିଲା ସରଳ । ତାଙ୍କ ଜୀବନରେ ସେ ବହୁତ ଦୁଃଖ କଷ୍ଟ ସହି ମଣିଷ ହୋଇଥିଲେ । ସେ ନିଜ ଆଖିରେ ବୋଧହୁଏ ଓଭରସିଅରଙ୍କ ମୃତ୍ୟୁ ଦେଖିଥିଲେ । ଓଭରସିଅର ଜୀବନର ଦୁଃଖ ବୋଧେ ସେ ଜାଣି ପାରିଲେ । ତେଣୁ ସେ ତାଙ୍କ ମନ ଗୃହସ୍ଥ, ଲାଞ୍ଚ, ମିଛର ଅନ୍ୟାୟ ପ୍ରତି ବିଦ୍ରୋହ କରି ଉଠିଲା । ସେ ଏ ସବୁର ପ୍ରତିଶୋଧ ନେବାପାଇଁ ଦୃଢ ପ୍ରତିଜ୍ଞ ହୋଇ ଉଠିଲେ । ସେଥିପାଇଁ ସେ ନିଜ ମନେ ମନେ ଗୋଟିଏ ଯୋଜନା ଠିକ୍ କରିନେଲେ । ଯୋଜନାଟା କଣକି, ଓଭରସିଅରଙ୍କ ମୃତ ଦେହରେ ନିଜ ପୋଷାକ ପିନ୍ଧାଇ ନିଜ ହାତ ଲେଖା ଚିଠି ରଖି ଦେଲେ । ନିଜେ ଛଦ୍ମବେଶରେ ଦୁନିଆ ଭିତରେ ଲୁଚିଗଲେ । କିନ୍ତୁ ସମସ୍ତେ ଜାଣିଲେ ଡ଼କ୍ଟର ମିଶ୍ର ଆତ୍ମହତ୍ୟା କରିଛନ୍ତି । ଓଭରସିଅରଙ୍କର ମସ୍ତକଟି ନଥିଲା । ତେଣୁ ମୃତ ବ୍ୟକ୍ତି ଯେ ଡ଼କ୍ଟର ମିଶ୍ର, ଏଥିରେ କାହାର ସନ୍ଦେହ ରହିଲାନି ।

ଡକ୍ଟର ମିଶ୍ର ଛଦ୍ମବେଶରେ ବଞ୍ଚିରହି ଦରିଦ୍ର ଜନତାର ସେବାରେ ଲାଗିଲେ । ତାଙ୍କୁ ସାହାଯ୍ୟ ଯୋଗାଇଲା ସେ

Digitized by srujanika@gmail.com

ଗବେଷଣା କର ପାଇଥିବା ଓ୍ଵେଲଟା ରଶି । ଯାହାକ ସେ କେବଳ ଓ୍ଵେଲଟା ରଶି ବିଷୟରେ ତଥ୍ୟ ଲେଖି ପୁରସ୍କୃତ ହୋଇଛନ୍ତି । ଏହାଠାରେ ଅଦ୍ଭୁତ ଗୋଟିଏ କଥା ସମସ୍ତେ ଜାଣିଥିବେ । ଅପରାଧୀ ଯେତେ ଟଙ୍କା ନେଇଛି ଆଗରୁ ଚିଠି ଦେଇ ପୋଲିସମାନଙ୍କ ଘେରାଉ ଭିତରୁ ସମସ୍ତଙ୍କ ସମ୍ମୁଖରେ ଟଙ୍କା ନେଇଯାଏ । କିନ୍ତୁ ଅପରାଧୀକୁ କେହି ଧରିପାରନ୍ତିନି । ଅପରାଧୀ କାହାକୁ କେବେ ହତ୍ୟା କରିନି କି କାହାକୁ ବାନ୍ଧି ଦରମରି କରିନି । ତେବେ ସେ ସମସ୍ତଙ୍କ ଆଖି ଆଗରେ ଟଙ୍କା ନେଇଯାଏ କିପରି ? କଣ ଅପରାଧୀ ଗୁଣି ଗାରେଡ଼ି ଜାଣିଛି ନା ମନ୍ତ୍ରପଢ଼ି ଜାଣେ ? ପୋଲିସ ଧରିବାକୁ ବହୁତ ଚେଷ୍ଟା କରି ବିଫଳ ହୋଇଛନ୍ତି । ଅପରାଧୀ ସମସ୍ତଙ୍କ ସମ୍ମୁଖରେ ଠିଆହେଲେ ମଧ୍ୟ ତାକୁ ଧରିବାକୁ କାହାର ଶକ୍ତି ନାହିଁ । କେବଳ ଜଳ ଜଳ କରି ଚାହୁଁଛନ୍ତି ସମସ୍ତେ । କାହାର ଆଖିପତା ପଡ଼ୁନି, ଯେପରି କି ଅପରାଧୀ ରୂପରେ ସେମାନେ ମୁଗ୍‌ଧହୋଇ ଏକା ଲୟରେ ଚାହିଁ ରହିଥାନ୍ତି । ସମସ୍ତଙ୍କ ଚଳନ୍ତ ଇନ୍ଦ୍ରିୟକୁ ଅଚଳ କରିଦିଏ ଅପରାଧୀ ।

ଅପରାଧୀ ପାଖରେ ଏପରି ଶକ୍ତି ଅଛି, ଯେଉଁ ଶକ୍ତିବଳରେ ସେ ମନୁଷ୍ୟକୁ ଦୁଇ ତିନି ଘଣ୍ଟାପାଇଁ ଅଚଳ କରିଦିଏ । ମନୁଷ୍ୟ ପଙ୍ଗୁପରି ପଡ଼ି ରହେ । କୌଣସି ଇନ୍ଦ୍ରିୟ ତାର କାମ କରନ୍ତିନି । କିନ୍ତୁ ଦୁଇ ତିନି ଘଣ୍ଟା ପରେ ମନୁଷ୍ୟ ପୁଣି ସବଳ ହୋଇ ଉଠେ । ମନୁଷ୍ୟର ସମସ୍ତ ଇନ୍ଦ୍ରିୟ କର୍ମ-ତତ୍ପର ହୋଇ ଉଠନ୍ତି । ଏପରି ଶକ୍ତି କଣ ଅଛି, କେହି ବୋଧେ କହି ପାରିବେନି । କିନ୍ତୁ ସେ

Digitized by srujanika@gmail.com

ଶକ୍ତି ବିଷୟରେ କହୁଥାନ୍ତେ ଆମର ଡକ୍ଟର ମିଶ୍ର । ଏଥିରୁ ଆପଣମାନେ ଜାଣିପାରୁଛନ୍ତି ତାହାର ସେ ଶକ୍ତି ।

ଡକ୍ଟର ମିଶ୍ର ଟେଲିପାଥି ଉପରେ ଗବେଷଣା କରି ଯେଉଁ ପ୍ରବନ୍ଧମାନ ଲେଖିଛନ୍ତି, ସେ ସମସ୍ତ ପ୍ରବନ୍ଧ ପଢ଼ିଲେ ମନେହୁଏ, ଟେଲିପାଥି ଯଦି ଗବେଷଣା କରି ତାହାର କରାଯାଏ, ତେବେ ଟେଲିପାଥି ସାହାଯ୍ୟରେ ଏ ଅଦ୍ଭୁତ ଶକ୍ତିର କାର୍ଯ୍ୟ ସମ୍ପନ୍ନ ହୋଇ ପାରେ । ଅବଶ୍ୟ ଟେଲିପାଥି ରେ ମୁଁ ଏତେଦୂର ଗବେଷଣା କରିନି । ତେବେ ଯାହା ଅଳ୍ପ ପଢ଼ିଛି, ସେ ସବୁରୁ ଏ ବିଷୟ ଜାଣି ପାରିଛି ।

ମୋର ଦୃଢ଼ ବିଶ୍ୱାସ ଯେ ଡକ୍ଟର ମିଶ୍ର କେବଳ ଟେଲିପାଥି ବିଷୟରେ ତଥ୍ୟ ଲେଖି ଗବେଷଣା କରି ନାହାନ୍ତି । ସେ ପ୍ରକୃତରେ ଗବେଷଣା କରି ଟେଲିପାଥି ପାଇଛନ୍ତି ।

ବହୁ ଦିନ ତଳର କଥା । ଯେଉଁଦିନ ରେଭେନ୍ସା କଲେଜରେ ହଠାତ ପଡ଼ିଯାଇଥିଲା ଡକ୍ଟର ମିଶ୍ରଙ୍କର ଅସୁସ୍ଥତା । ଡକ୍ଟର ମିଶ୍ର ଗବେଷଣା କରୁ କରୁ ଅଚେତ ହୋଇ ପଡ଼ିଥିଲେ । ଅଥଚ ମଧ୍ୟ ମେଡିକାଲ୍‌ରେ ରହିବାର ତିନି ଚାରି ଘଣ୍ଟା ପରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଫେରି ଆସିଥିଲେ । ସେ ଦିନ ସାରା କଟକ ନଗରୀ ଡକ୍ଟର ମିଶ୍ରଙ୍କ ଅସୁସ୍ଥତା ନେଇ ବ୍ୟାକୁଳ ହୋଇ ଉଠିଥିଲା । କଲେଜର ଅଧ୍ୟକ୍ଷ ଅଧ୍ୟାପକ ତାଙ୍କର ଅସୁସ୍ଥତା ଓ ସୁସ୍ଥ ହୋଇ ଫେରିବା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ! କିନ୍ତୁ ସେ ଦିନ ଡକ୍ଟର ମିଶ୍ର କଣ ପ୍ରକୃତରେ ଅସୁସ୍ଥ ହୋଇ-

Digitized by srujanika@gmail.com

ଥିଲେ ? ମୋର ଆଶା ସେ ଦିନ ବୋଧେ ସେ ନିଜ ଦେହରେ ଟେଲିଟା ଋଶ୍ମି ପରୀକ୍ଷା କରିଥିଲେ । ସେହି ଋଶ୍ମି ପ୍ରଭାବରୁ ସେ ଜନସାଧାରଣ ପ୍ରାପ୍ତ ଅଚେତନ ହୋଇ ଯାଇଥିଲେ । ଏହା ସତ୍ୟ କି ମିଥ୍ୟା, ପ୍ରମାଣ କରିବେ ଡକ୍ଟର ମିଶ୍ର ସେହି ଋଶ୍ମି ସାହାଯ୍ୟରେ ଲୋକ ଲୋକ ଚକ୍ଷୁରେ ଅନ୍ତରାଳରେ ରହି ଅସାଧ୍ୟ ସାଧନ କରୁଛନ୍ତି । 'ଅପରାଧୀ' ନାଁ ନେଇ ଦେଶରୁ ଦୁର୍ନୀତି ଦୂର କରିବାକୁ ତତ୍ପର ହୋଇ ଉଠିଛନ୍ତି । ଡକ୍ଟର ମିଶ୍ରଙ୍କ ଉଚ୍ଚ କୋଟୀର ଗବେଷଣା ଯୋଗୁ ଆଜ ସେ ସମଗ୍ର ବିଶ୍ବରେ ବନ୍ଦନୀୟ । କିନ୍ତୁ ମୁଁ ତାଙ୍କୁ ଅପରାଧୀ ବୋଲି ଚିହ୍ନି ତାଙ୍କ ଛଦ୍ମବେଶକୁ ଅଜ ପଦାରେ ପକାଇ ଦେଇଛି । ସେଥିପାଇଁ ଯଦି ମୋର ଦୋଷ ଥାଏ, ତେବେ ଡକ୍ଟର ମିଶ୍ର ଓ ଡକ୍ଟରେକ୍ଟର ସ୍ବପ୍ନାଦେବୀ ମୋର ଧୃଷ୍ଟତା ଯୋଗୁ ମୋତେ କ୍ଷମା କରିବେ ।

ମୋର ଆଜ ବିଶେଷ କିଛି କହିବାର ନାହିଁ । ଯଦି ମୁଁ କିଛି ଭୁଲ କରିଥାଏ ବା ମିଥ୍ୟା କହିଥାଏ, ତେବେ ତାର ସତ୍ୟା ସତ୍ୟ ପ୍ରମାଣ ଦେବେ ସୁମନ୍ତ ବାବୁ ଓରଫ ଡକ୍ଟର ମିଶ୍ର । ଏତିକିରେ ମୁଁ ମୋ କଥା ଶେଷ କରୁଛି ।

ଆଇ. ଜି. ସାହେବ ସୁଧାଂଶୁ ବାବୁଙ୍କ ସମସ୍ତ କଥାଗୁଡ଼ିକ ନୋଟ୍ କରି ନେଉଥାନ୍ତି । ନୋଟ୍ କରି ସାରିବା ପରେ ସୁମନ୍ତ ବାବୁଙ୍କୁ ଚାହିଁଲେ । ସୁମନ୍ତ ବାବୁ ସେତେବେଳେ ହସ ହସ ମୁହଁରେ ଚୁହିଁ ରହି ଥାନ୍ତି । ମୁହଁରେ ନାହିଁ ତାଙ୍କର ଭୟ ବା ଅନୁଶୋଚନାର ଚିହ୍ନ । ଆଇ. ଜି. ସାହେବ ଗମ୍ଭୀର ହୋଇ ପଚାରିଲେ, "ସୁମନ୍ତ ବାବୁ, ଆପଣଙ୍କର କଣ କହିବାର ଅଛି, କୁହନ୍ତୁ । ସୁଧାଂଶୁ ବାବୁ ଆପଣଙ୍କ ବିଷୟରେ ଯାହା ସମସ୍ତ

Digitized by srujanika@gmail.com

ଘଟଣା କହିଗଲେ, ସେ ସମସ୍ତ ଘଟଣା କଣ ସତ୍ୟ ? ଯଦି ସତ୍ୟ ନୁହେଁ, ତେବେ କୁହନ୍ତୁ । ଆପଣଙ୍କ ଠାରୁ ସମସ୍ତ କଥା ଜାଣିବା ପାଇଁ ଆମେ ଉଦ୍‌ବଗ୍ନ । ସମସ୍ତ ଘଟଣା କହି ସନ୍ଦେହ ଦୂର କରନ୍ତୁ ।"

ସୁମନ୍ତବାବୁ ଅଳ୍ପ ହସି କହିଲେ, "ଆଜ ଏ ଦିନଟି ମୋ ମୋ ପକ୍ଷରେ ବଡ଼ ଶୁଭ ଦିବସ । ଏପରି ଗୋଟିଏ ଦିନ ପାଇଁ ବର୍ଷ ବର୍ଷ ହେଲା ମୁଁ ଅପେକ୍ଷା କରି ଆସିଥିଲି । କିନ୍ତୁ ଏତେଦିନ କଟି ଯାଇଥିଲେ ମଧ୍ୟ ଏ ସୁଯୋଗ ଆସି ନଥିଲା ।

ଅଇ. ଜ. ସାହେବଙ୍କ ନିକଟରେ ଆଜ ମୁଁ ଅପରାଧୀ ଭାବରେ ସନ୍ଦେହ ହୋଇ ଠିଆ ହୋଇଛୁ । ସେଥିପାଇଁ ମୋ ମନରେ ଅନୁଶୋଚନା ନାହିଁ ବରଂ ମୋତେ ଖୁସି ଲାଗୁଛୁ । ଦୀର୍ଘ ଦିନ ଧରି ସୁଧାଂଶୁ ବାବୁ ମୋ ପଛରେ ବହୁତ ଅନୁସନ୍ଧାନ ଚଳାଇ ପୋଲିସକୁ ଖବରଦେଇ ପାରିଛନ୍ତି, ସେଥିପାଇଁ ତାଙ୍କୁ ମୁଁ ଅଶେଷ ଧନ୍ୟବାଦ ଜଣାଉଛୁ । ମୋ ବିରୁଦ୍ଧରେ ଯାହାସବୁ ପ୍ରମାଣ ସଂଗ୍ରହ କରିଛନ୍ତି, ସେଥିପାଇଁ ସୁଧାଂଶୁ ବାବୁଙ୍କୁ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିବ । କିନ୍ତୁ 'ଅପରାଧୀ' ବୋଲି ମୋତେ ଧରାଇ ଦେଲେ ତାଙ୍କର ସ୍ୱାର୍ଥ କଣ ? ଏଇଠାରେ ମୋ ମନରେ କେତେଗୁଡ଼ିଏ ପ୍ରଶ୍ନ ଉଠୁଛୁ, ସେ ପ୍ରଶ୍ନ ଗୁଡ଼ିକ ଏଠାରେ ନ ପଚାରି ରହି ପାରୁନି । ଏ ପ୍ରଶ୍ନର, ଯଥାର୍ଥତା ଉତ୍ତର ସୁଧାଂଶୁ ବାବୁ ଦିଅନ୍ତୁ ।

ସୁଧାଂଶୁ ବାବୁ ମିଶ୍ର ଇନ୍‌ଷ୍ଟିଚ୍ୟୁଟକୁ ଗବେଷଣା କରିବାକୁ ଆସିଥିଲେ ନା ଗୋଏନ୍ଦାଗିରି କରିବାକୁ ଆସିଥିଲେ ? ଜଣେ

Digitized by srujanika@gmail.com

ଶସର୍ଚ୍ଚ ଅଫିସର ଅପରାଧୀକୁ ଧରିବା ପାଇଁ ବା ଡକ୍ଟର ମିଶ୍ରଙ୍କୁ ଛାଡ଼ିବା ପାଇଁ ଏତେ ଅନୁସନ୍ଧାନ କାହିଁକି ? କଣ ଡକ୍ଟର ମିଶ୍ରଙ୍କୁ ସମର୍ପିଦେଲେ ସୁଧାଂଶୁ ବାବୁଙ୍କ ଗବେଷଣା ସଫଳତା ଲାଭ କରି ପାରିବ ? ସାଧାରଣତଃ ଯେ ଗବେଷଣା କରେ, ସେ ତା ଗବେଷଣା ଭିତରେ ଏତେ ମଗ୍ନ ଯାଏ ଯେ ନିଜର ଦୈନନ୍ଦିନ ନିତ୍ୟକର୍ମକୁ ଭୁଲିଯାଏ । ଗବେଷଣାଗାରର ବନ୍ଧ୍ୟ ପଥ, ଯନ୍ତ୍ରପାତି ଏ ସମସ୍ତ ଜିନିଷ ଗବେଷକର ସବୁଠାରୁ ପ୍ରିୟ ପଦାର୍ଥ ପରି ମନେ ହୁଏ । ସେ ଭୁଲିଯାଏ ବାହାର ଦୁନିଆର କଥା । ସେ ଚାହେଁ ତାର ସମସ୍ତ ସମୟ କଟାଇ ଦବାକୁ ଗବେଷଣା ଭିତରେ । ଗବେଷକ ଗବେଷଣାରେହିଁ ପାଏ ତାର, ଆନନ୍ଦ, ଉତ୍ସାହ ସବୁ କିଛି । ସେ ଅନ୍ୟ କଥା ଭାବିବାକୁ ସମୟ ବି ପାଏନା । ଗବେଷଣା କରିବାରେ ଯେଉଁ ସ୍ୱର୍ଗୀୟ ଆନନ୍ଦ, ଉତ୍ସାହ ମିଳେ ତାହା କହିପାରିବେ ଆମର ଗବେଷଣା କରୁଥିବା ଛାତ୍ର ଓ ଅଧ୍ୟାପକ-ମାନେ । ଯିଏ ଗବେଷଣା କରେ, ସେ ଚାହେଁ କିପରି ସେ ନିଜ ଗବେଷଣାରେ ସଫଳତା ଲାଭ କରିବ । କିନ୍ତୁ ସୁଧାଂଶୁ ବାବୁ ଏହାର ବ୍ୟତିକ୍ରମ ହେଲେ କିପରି ? ସେ ନିଜ ଗବେଷଣା ଛାଡ଼ି ଅପରାଧୀକୁ ଧରିବା ପାଇଁ ଗୋଏନ୍ଦା କାର୍ଯ୍ୟରେ ଲିପ୍ତ ରହିଲେ କାହିଁକି ? ଶସର୍ଚ୍ଚ ଅଫିସର ଚୋର ପଛରେ ଗୋଡ଼ାଇବାରେ ଆନନ୍ଦ ପାଏ କି ?

ସୁଧାଂଶୁବାବୁ ଯାହା ସବୁ ପ୍ରମାଣ ସଂଗ୍ରହ କରିଛନ୍ତି, ସେଥିରେତମୋତେ ଅପରାଧୀ ବୋଲି ଧରିବାକୁ କୌଣସି ପ୍ରମାଣ ନାହିଁ । ଯାହାସବୁ ପ୍ରମାଣ ସଂଗ୍ରହ କରିଛନ୍ତି, ସେଥିରେ କେବଳ

Digitized by srujanika@gmail.com

ଉତ୍କଳର ମିତ୍ର ବୋଲି ମୋତେ ଚିହ୍ନିତ କରି ପାରିଛନ୍ତି । ଆଜି ଏଠାରେ ସମସ୍ତଙ୍କ ସମ୍ମୁଖରେ ମୁଁ ସ୍ୱୀକାର କରୁଛି ଯେ ପ୍ରକୃତରେ ମୁଁ ହେଉଛି ଉତ୍କଳର ମିତ୍ର । ଆଜି ପର୍ଯ୍ୟନ୍ତ ମୁଁ କାହିଁକି ଦୁନିଆ ଆଖିରୁ ଲୁଚି ରହିଥିଲି, ସେ କଥା ମୋ ଛଡା ଆଉ କେହି ଜାଣି ନାହାଁନ୍ତି । ଆଜି ସେହି ଅତୀତର ଘଟଣା ଗୁଡ଼ିକ ଆପଣମାନଙ୍କୁ କହିବାକୁ ଚାହୁଁଛି । ହୁଏତ ବହୁ ଦିନ ପରେ ଆଜି ଆପଣମାନେ ମୋତେ ସମ୍ମୁଖରେ ଦେଖି ଆଶ୍ଚର୍ଯ୍ୟ ହେଉଥିବେ । କିନ୍ତୁ ମୁଁ ଆପଣମାନଙ୍କ ସମ୍ମୁଖରେ ସବୁଦିନ ରହିଥିଲେ ମଧ୍ୟ ଆପଣମାନେ କେହି ଆଜି ପର୍ଯ୍ୟନ୍ତ ଚିହ୍ନି ପାରି ନ ଥିଲେ । କେବଳ ମୋତେ ରୂପରେ ନ ଚିହ୍ନି ମୋ ଅତୀତର ଘଟଣା ଶୁଣି ମୋ ଅନ୍ତରକୁ ମଧ୍ୟ ଚିହ୍ନନ୍ତୁ । ମୁଁ ଶ୍ରେଷ୍ଠ ନୁହେଁ କି ଉକାପୂତ ନୁହେଁ, ଆପଣମାନଙ୍କ ପରି ଜଣେ ସାଧାରଣ ମଣିଷ । ତେବେ ଶୁଣନ୍ତୁ ମୋ ଜୀବନରେ ଅତୀତ ହୋଇ ଯାଇଥିବା ଛିନ୍ନ ଇତିହାସ ।

ଶିଶୁ ଅବସ୍ଥାରୁ ଆଜି ପର୍ଯ୍ୟନ୍ତ ମୋ ଜୀବନରେ ବହୁତ ଝଡ଼ ବତାସୀ ବହି ଯାଇଛି । ସେ ସବୁକୁ ଆଡ଼େଇ ଦେଇ ମୁଁ ଆଜି ପର୍ଯ୍ୟନ୍ତ ଆଗେଇ ଆସିଛି । ଦୁଃଖ, କଷ୍ଟ, ଅଭାବ ଏସବୁତ ମୋର ଜୀବନର ସହଚର ହୋଇ ଆସିଲା । ଯେତେବେଳେ ମନୁଷ୍ୟର ସ୍ନେହ ମମତା ଭରା ଆଦର ବେଶୀ ଦରକାର, ଠିକ୍ ସେତିକବେଳେ ମୁଁ ତାହା ହରାଇ ବସିଛି ।

ଶିଶୁ ସମୟରୁ ମୁଁ ମାତୃହରା । ମାଆର ସ୍ନେହ ମୁଁ ପାଇ ପାରିନି, କି ମାଆ ବୋଲି ଦିନେ ମନ ଭରି ଡାକି ପାରିନି ।

Digitized by srujanika@gmail.com

ପିଉସୀଙ୍କ ସ୍ନେହରେ ଶିଶୁ ସମସ୍ତ କଟିଛି । ଶିଶୁ ଅବସ୍ଥାରୁ କୈଶୋର ଅବସ୍ଥା ପର୍ଯ୍ୟନ୍ତ ମୋର ସହାୟ ଥିଲେ ପିଉସୀ ଓ ବାପା । ପିଉସୀ ଓ ବାପାଙ୍କ ସ୍ନେହ ଆଦର ଭିତରେ ମୁଁ ଭୁଲିଥିଲି ମାଆଙ୍କୁ । କିନ୍ତୁ କିଶୋର ଅବସ୍ଥାରେ ଥିଲାବେଳେ ବାପା ଓ ପିଉସୀ ଦୁଇଜଣଯାକ ଆର ପୁରକୁ ଗ୍ଳଲିଗଲେ । ସଂସାରରେ ଏକାକୀ ହୋଇ ମୁଁ ବଞ୍ଚି ରହିଲି । କୈଶୋର ଅବସ୍ଥାରୁ ନିଜକୁ ନିଜେ ମୁଁ ସଜାଡ଼ିବାକୁ ଶିଖିଛି । ବହୁତ କଷ୍ଟ ସହି ପାଠ ପଢ଼ିଛି, ଯାହା କି ଏବକାର ଛାତ୍ରମାନେ କରିପାରିବେନି ଏତେ ଦୁଃଖ କଷ୍ଟ ଭିତରେ ପାଠ ପଢ଼ି ମଧ୍ୟ ମୁଁ ଥିଲି ବିଶ୍ୱବିଦ୍ୟାଳୟର କୃତି ଛାତ୍ର । କୃତି ଛାତ୍ର ରୂପେ ବୃତ୍ତି ପାଇ ଉଚ୍ଚ ଶିକ୍ଷା ଲାଭ କଲି ।

ଉତ୍କଳ ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଜ୍ଞାନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ମୁଁ ଏମ୍.ଏସ୍.ସି.ପାସ୍ କଲି ତା ପରେ ରେଭେନ୍‌ସା ମହାବିଦ୍ୟାଳୟରେ ପଦାର୍ଥ ବିଜ୍ଞାନ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲି । ତଥାପି ସେତିକି ପାଠ ପଢ଼ି ଚୁପ୍ ହୋଇ ରହିବାକୁ ମୋତେ ଭଲଲାଗିଲାନି । ତେଣୁ ମୁଁ ବୃତ୍ତି ପାଇ ଯୁକ୍ତରାଷ୍ଟ୍ର ଆମେରିକା ଗଲି । ଆମେରିକାରେ ରହି ତିନିବର୍ଷ ଗବେଷଣା କରିବା ପରେ ପି.ଏଚ୍.ଡି,ରେ ଉପାଧି ପାଇଲି । ଉପାଧି ପାଇବା ପରେ ଆହୁରି ତିନି ବର୍ଷ ବିଦେଶରେ କଟାଇଛି । ବହୁତ ଦେଶ ବିଦେଶ ବୁଲିଛି । କିନ୍ତୁ ମୋତେ ସେ ବିଦେଶର ପାଣି ପବନ ଶାନ୍ତି ଦେଇପାରିଲାନି । ମୁଁ ଫେରିଆସିଲି ସ୍ୱଦେଶକୁ, ହେଲି ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟାପକ ହୋଇ ।

Digitized by srujanika@gmail.com

ବିଦେଶରୁ ଫେରି ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟାପକ ହୋଇ ରହିବା ପରେ ପୁଣି ପଇସାର ଅଭାବ ହେଲା । କାରଣ ଯେତେ ଅଳ୍ପ ଟଙ୍କା ପାଇଲେ ମୁଁ ଚଳିଯାନ୍ତି ତାଠାରୁ କମ୍ ଟଙ୍କା ମୋତେ ଆମ ସରକାର ଦେଉଥାନ୍ତି । ଗବେଷଣା କରିବାକୁ ଯାହା ବହିପତ୍ର ଦରକାର, ତାହା ମୋ ବେତନରୁ କିଣିବା କଷ୍ଟକର । ତେଣୁ ମୋ ପଢ଼ା ପଢ଼ିରେ ବ୍ୟାଘାତ ସୃଷ୍ଟି ହେଉଥାଏ । ତଥାପି ନିଜ ଖର୍ଚ୍ଚ ପାଇଁ ଅଳ୍ପ ଟଙ୍କା ରଖି ବାକି ସମସ୍ତ ଟଙ୍କାରେ ବହି ପତ୍ର କିଣେ । ତଥାପି ମୋ ପଢ଼ା ପଢ଼ି ଓ ଗବେଷଣା ଭିତରେ ଅଭାବ, ଅସୁବିଧା କଥା ଭୁଲିଯାଏ ।

ମୋ ଗବେଷଣାରେ ସାହାଯ୍ୟ କରୁଥାନ୍ତି ସ୍ୱପ୍ନାଦେବୀ । ସେ ନିଜେ ମଧ୍ୟ ମୋ ତତ୍ତ୍ୱାବଧାନରେ ଗବେଷଣା କରୁଥାନ୍ତି । ସ୍ୱପ୍ନାଦେବୀଙ୍କ ସାହଚର୍ଯ୍ୟ ଗବେଷଣାରେ ମୋତେ ବହୁତ ଉତ୍ସାହ ଓ ପ୍ରେରଣା ଯୋଗାଇଛି । ହୁଏତ ତାଙ୍କର ସାହାଯ୍ୟ ନପାଇଥିଲେ ମୁଁ ଗବେଷଣାରେ ଏତେ ସଫଳତା ଲାଭ କରି ପାରି ନ ଥାନ୍ତି ।

ସ୍ୱପ୍ନାଦେବୀଙ୍କ ସହିତ ଅଧିକାଂଶ ସମୟ ଗବେଷଣା ଭିତରେ କଟିଯାଏ । ଦୁହେଁ ଗବେଷଣାରେ କିପରି ସଫଳତା ଲାଭ କରିବୁ, ତାହାହିଁ ଥିଲା ଆମ ଦୁହିଁଙ୍କର ପ୍ରଧାନ ଚିନ୍ତା । ପାଠ ପଢ଼ିବା, ଗବେଷଣା କରିବା, ଏହା ଛଡ଼ା ଆମେ ଅଯଥା ସମୟ ନଷ୍ଟ କରୁନାହିଁ । ମୁଁ ସ୍ୱପ୍ନାଦେବୀଙ୍କୁ ବହୁତ ନିକଟରେ ପାଇ ମଧ୍ୟ କେବେହେଲେ ତାଙ୍କ ପ୍ରତି ଆସକ୍ତ ହୋଇ ନଥିଲି । ସ୍ୱପ୍ନାଦେବୀଙ୍କ ଠାରେ ମଧ୍ୟ କେବେ ଦୁର୍ବଳତା ମୁଁ ଦେଖିବାକୁ ପାଇନି । ସ୍ୱପ୍ନାଦେବୀଙ୍କ ନିର୍ଭିକତା ଓ ସଚ୍ଚୋଟତା ମୋତେ ମୁଗ୍ଧ

Digitized by srujanika@gmail.com

କରିଥିଲୁ । ଅଧ୍ୟାପକ ଥିଲି ମୁଁ, ମୋର ଛାତ୍ରୀ ଥିଲେ ସ୍ୱପ୍ନା-ଦେବୀ । ଆମର ସମ୍ପର୍କ ଥିଲା ମହତ୍ତ୍ୱପୂର୍ଣ୍ଣ ।

ଦିନ ପରେ ଦିନ ଚାଲି ଗଲେ । ଡେଲଟା ରଶ୍ମି ଉପରେ ମୁଁ ଗବେଷଣା କରୁଥାଏ । ଯେଉଁ ଡେଲଟା ରଶ୍ମି ଗବେଷଣାର ତଥ୍ୟ ଲେଖି ମୁଁ ଜାତୀୟ ସମ୍ମାନ ପାଇଛି, ସେହି ଡେଲଟା ରଶ୍ମି ନେଇ ତଥ୍ୟ ଲେଖିବା ପରେ, ପ୍ରକୃତରେ କିପରି ଡେଲଟା ରଶ୍ମି ପାଇପାରିବ, ସେଥିପାଇଁ ଗବେଷଣା କରୁଥାଏ । ଡେଲଟା ରଶ୍ମି ପାଇବା ପାଇଁ ବହୁତ ଦିନ ଗବେଷଣାଗାର ଭିତରେ ରହି ଗବେଷଣା କରିଯାଇଛି । ଅକ୍ଳାନ୍ତ ପରିଶ୍ରମ କରି, ଖାଇବା ପିଇବା ଭୁଲି ଯାଉଥାଏ । କିନ୍ତୁ ଗବେଷଣାରେ ସଫଳତା ଲାଭ କରି ପାରୁନ । ତଥାପି ଉତ୍ସାହ ମୋର କମି ଯାଏନ । ଆଶାଥାଏ, ଏତେ ପରିଶ୍ରମର କଣ ମୂଲ୍ୟ ନାହିଁ ? ଦିନପରେ ଦିନ ଚାଲି ଯାଇଛି । ମୋ ଗବେଷଣା ନେଇ ମୁଁ ସବୁବେଳେ ବ୍ୟସ୍ତ ଥାଏ । ଦିନ ଆସିଲା ମୁଁ ଡେଲଟା ରଶ୍ମି ପାଇଲି । କିନ୍ତୁ ଯେଉଁ ଦିନ ମୁଁ ଡେଲଟା ରଶ୍ମି ବାହାର କଲି ସେ ଦିନ ମୁଁ ଜାଣି ନଥିଲି ଯେ ମୁଁ ଡେଲଟା ରଶ୍ମି ପାଇଯିବି ବୋଲି । ସେ ଦିନଟି ମୋ ସ୍ମୃତି ପଟରୁ କେବେ ଲିଭିବ ନାହିଁ ।

ବୈଶାଖର ଏକ ମଧ୍ୟାହ୍ନ ସମୟରେ ମୁଁ ଡେଲଟା ରଶ୍ମି ପାଇଥିଲି । ହଠାତ୍ ମୁଁ ଗବେଷଣା କରୁଥିବା ସମୟରେ ମୋ ଅଙ୍ଗପ୍ରତ୍ୟଙ୍ଗ ଅଚଳ ହୋଇ ଗଲା । ମୋର ସମସ୍ତ ଇନ୍ଦ୍ରିୟ ଗୁଡ଼ିକ ଶକ୍ତି ହରାଇ ନିସ୍ତେଜ ହୋଇ ପଡ଼ିଲେ । ମୋର ସେହି ଅଚଳ ଅବସ୍ଥାରେ ମୋତେ ମେଡିକାଲ୍ ପଠା ହୋଇଥିଲା । କିନ୍ତୁ

Digitized by srujanika@gmail.com

ଡାକ୍ତରମାନେ ମୋର ରୋଗ କଣ ଜାଣି ପାରି ନଥିଲେ । ଶେଷ, ପାଞ୍ଚ ଘଣ୍ଟା ଭିତରେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଲି । ତା ପରେ ମୁଁ ଜାଣି ପାରିଲି ଯେ ଡେଲ୍ଟା ରଶ୍ମି ବାହାର କରି ପାରିଛି । ଡେଲଟା ରଶ୍ମିକୁ ଜୀବ ଜନ୍ତୁଙ୍କ ଠାରେ ପରୀକ୍ଷା କରି ଦେଖିଲି ଯେ ଡେଲଟା ରଶ୍ମିକୁ ଯାହା ଦେହରେ ପକାଇଦେବ ସେ କିଛି ସମୟ ପାଇଁ ଅଚଳ ହୋଇଯିବ । ତାର କୌଣସି ଇନ୍ଦ୍ରିୟ କାମ କରି ପାରିବନି । ବହୁତ ଦିନର ଗବେଷଣା ପରେ ଡେଲ୍ଟା ରଶ୍ମି ପାଇଥିବାରୁ ମୋ ମନ ବହୁତ ଖୁସିଥାଏ । ଠିକ୍ କରିଥାଏ ଅଳ୍ପ ଦିନ ପରେ ଡେଲଟା ରଶ୍ମିର ପ୍ରକୃତ ରୂପ ସମସ୍ତଙ୍କ ପାଖରେ ପ୍ରକାଶ କରିଦେବି । କିନ୍ତୁ ଡେଲଟା ରଶ୍ମିର ପ୍ରକୃତ ରୂପ ସମସ୍ତଙ୍କ ପାଖରେ ଜଣାଇବା ପୂର୍ବରୁ ମୋ ସମ୍ମୁଖରେ ଆସି ଦେଖା ଦେଲା ଅଜ ଗୋଟିଏ ସମସ୍ୟା । ଯେଉଁ ସମସ୍ୟା ପାଇଁ ଆଗେଇ ଆସିଛି ଆଜିପର୍ଯ୍ୟନ୍ତ ପଛକୁ ନାହିଁ । ଭୁଲି ଯାଇଛି ମୋର ମାନ, ସମ୍ମାନକୁ । ଲୁଚିରହି ଦରିଦ୍ରର ସେବାକୁ ମୋ ଜୀବନର ବ୍ରତ କରିଛି । ସେ ସମସ୍ୟାଟି ମୁଁ କହିବି ପାଇଲି, ଶୁଣନ୍ତୁ ଆଇ.ଜି. ସାହେବ । ଯାହା କି ଆଜିପର୍ଯ୍ୟନ୍ତ ମୋ ଛଡ଼ା କେହି ଜାଣି ନାହାଁନ୍ତି ।

ଦିନେ ସନ୍ଧ୍ୟା ସମୟରେ ମୁଁ କାଠଯୋଡ଼ି ପୋଲ ନିକଟରେ ବୁଲୁଥାଏ । ଆଉ ପ୍ରାୟ କେହି ନଥାନ୍ତି । ହଠାତ୍ ଦେଖିଲି, ଗୋଟିଏ ଲୋକ ରେଲର ଲୁହାଧାର ତଳେ କଟିଗଲା । ଆଖି ସାମନାରେ ଗୋଟିଏ ଲୋକ ଏପରି ଭାବରେ ଆତ୍ମହତ୍ୟା କରିବା ଦେଖି ଅନ୍ତର ମୋର କାନ୍ଦି ଉଠିଲା । ଲୋକଟି ପାଖକୁ ଦୌଡ଼ି

Digitized by srujanika@gmail.com

କରିଥିଲି । ଅଧ୍ୟାପକ ଥିଲି ମୁଁ, ମୋର ସ୍ତ୍ରୀ ଥିଲେ ସ୍ୱପ୍ନା-ଦେବୀ । ଆମର ସମ୍ପର୍କ ଥିଲା ମହତ୍ତ୍ୱପୂର୍ଣ୍ଣ ।

ଦିନ ପରେ ଦିନ ଚାଲି ଗଲେ । ଡେଲଟା ରଶ୍ମି ଉପରେ ମୁଁ ଗବେଷଣା କରୁଥାଏ । ଯେଉଁ ଡେଲଟା ରଶ୍ମି ଗବେଷଣାର ତଥ୍ୟ ଲେଖି ମୁଁ ଜାତୀୟ ସମ୍ମାନ ପାଇଛି, ସେହି ଡେଲଟା ରଶ୍ମି ନେଇ ତଥ୍ୟ ଲେଖିବା ପରେ, ପ୍ରକୃତରେ କିପରି ଡେଲଟା ରଶ୍ମି ପାଇପାରିବି, ସେଥିପାଇଁ ଗବେଷଣା କରୁଥାଏ । ଡେଲଟା ରଶ୍ମି ପାଇବା ପାଇଁ ବହୁତ ଦିନ ଗବେଷଣାଗାର ଭିତରେ ରହି ଗବେଷଣା କରିଯାଇଛି । ଅକ୍ଳାନ୍ତ ପରିଶ୍ରମ କରି, ଖାଇବା ପିଇବା ଭୁଲି ଯାଉଥାଏ । କିନ୍ତୁ ଗବେଷଣାରେ ସଫଳତା ଲାଭ କରି ପାରେନି । ତଥାପି ଉତ୍ସାହ ମୋର କମି ଯାଏନି । ଆଶାଥାଏ, ଏତେ ପରିଶ୍ରମର କଣ ମୂଲ୍ୟ ନାହିଁ ? ଦିନପରେ ଦିନ ଚାଲି ଯାଇଛି । ମୋ ଗବେଷଣା ନେଇ ମୁଁ ସବୁବେଳେ ବ୍ୟସ୍ତ ଥାଏ । ଦିନ ଆସିଲା ମୁଁ ଡେଲଟା ରଶ୍ମି ପାଇଲି । କିନ୍ତୁ ଯେଉଁ ଦିନ ମୁଁ ଡେଲଟା ରଶ୍ମି ବାହାର କଲି ସେ ଦିନ ମୁଁ ଜାଣି ନଥିଲି ଯେ ମୁଁ ଡେଲଟା ରଶ୍ମି ପାଇଯିବି ବୋଲି । ସେ ଦିନଟି ମୋ ସ୍ମୃତି ପଟରୁ କେବେ ଲିଭିବ ନାହିଁ ।

ବୈଶାଖର ଏକ ମଧ୍ୟାହ୍ନ ସମୟରେ ମୁଁ ଡେଲଟା ରଶ୍ମି ପାଇଥିଲି । ହଠାତ୍ ମୁଁ ଗବେଷଣା କରୁଥିବା ସମୟରେ ମୋ ଅଙ୍ଗପ୍ରତ୍ୟଙ୍ଗ ଅଚଳ ହୋଇ ପଡିଲା । ମୋର ସମସ୍ତ ଇନ୍ଦ୍ରିୟ ଗୁଡ଼ିକ ପାଇଁ ନିସ୍ତେଜ ହୋଇ ପଡ଼ିଲେ । ମୋର ସେହି ଅଚଳ ଅବସ୍ଥାରେ ମୋତେ ମେଡିକାଲ୍ ପଠା ହୋଇଥିଲା । କିନ୍ତୁ

Digitized by srujanika@gmail.com

ଡାକ୍ତରମାନେ ମୋର ରୋଗ କଣ ଜାଣି ପାରି ନଥିଲେ । ପୂରା, ପାଞ୍ଚ ଘଣ୍ଟା ଭିତରେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଉଠିଲି । ତା ପରେ ମୁଁ ଜାଣି ପାରିଲି ଯେ ଡେଲ୍ଟା ରଶ୍ମି ବାହାର କରି ପାରିଛି । ଡେଲଟା ରଶ୍ମିକୁ ଜୀବ ଜନ୍ତୁଙ୍କ ଠାରେ ପରୀକ୍ଷା କରି ଦେଖିଲି ଯେ ଡେଲଟା ରଶ୍ମିକୁ ଯାହା ଦେହରେ ପକାଇଦେବ ସେ କିଛି ସମୟ ପାଇଁ ଅଚଳ ହୋଇଯିବ । ତାର କୌଣସି ଇନ୍ଦ୍ରିୟ କାମ କରି ପାରିବନି । ବହୁତ ଦିନର ଗବେଷଣା ପରେ ଡେଲ୍ଟା ରଶ୍ମି ପାଇଥିବାରୁ ମୋ ମନ ବହୁତ ଖୁସିଥାଏ । ଠିକ୍ କରିଥାଏ ଅଳ୍ପ ଦିନ ପରେ ଡେଲଟା ରଶ୍ମିର ପ୍ରକୃତ ରୂପ ସମସ୍ତଙ୍କ ପାଖରେ ପ୍ରକାଶ କରିଦେବି । କିନ୍ତୁ ଡେଲଟା ରଶ୍ମିର ପ୍ରକୃତ ରୂପ ସମସ୍ତଙ୍କ ପାଖରେ ଜଣାଇବା ପୂର୍ବରୁ ମୋ ସମ୍ମୁଖରେ ଆସି ଦେଖା ଦେଲା ଅଭିଶପ୍ତ ସମସ୍ୟା । ଯେଉଁ ସମସ୍ୟା ପାଇଁ ଆଗେଇ ଆସିଛି ଆଜିପର୍ଯ୍ୟନ୍ତ ପଛକୁ ନଯାଇଁ । ଭୁଲି ଯାଇଛି ମୋର ମାନ, ସମ୍ମାନକୁ । ଲୁଚିବାକୁ ଦେଶଦ୍ରୋହୀ ସେବାକୁ ମୋ ଜୀବନର ବ୍ରତ କରିଛି । ସେ ସମସ୍ୟାଟି ମୁଁ କପରି ପାଇଲି, ଶୁଣନ୍ତୁ ଆଇ.ଜି. ସାହେବ । ଯାହା କି ଆଜିପର୍ଯ୍ୟନ୍ତ ମୋ ଛଡ଼ା କେହି ଜାଣି ନାହାନ୍ତି ।

ଦିନେ ସନ୍ଧ୍ୟା ସମୟରେ ମୁଁ କାଠଯୋଡ଼ି ପୋଲ ନିକଟରେ ବୁଲୁଥାଏ । ଆଜି ପ୍ରାୟ କେହି ନଥାନ୍ତି । ହଠାତ୍ ଦେଖିଲି, ଗୋଟିଏ ଲୋକ ରେଲର ଲୁହାଧାର ତଳେ କଟିଗଲା । ଆଖି ସାମନାରେ ଗୋଟିଏ ଲୋକ ଏପରି ଭାବରେ ଆତ୍ମହତ୍ୟା କରିବା ଦେଖି ଅନ୍ତର ମୋର କାନ୍ଦି ଉଠିଲା । ଲୋକଟି ପାଖକୁ ଦୌଡ଼ି

Digitized by srujanika@gmail.com

ଯାଇ ଦେଖିଲି ତାର ମୁଣ୍ଡଟି ଦେହଠାରୁ ଅଲଗା ହୋଇ ପଡ଼ିଛି ।
ସେ ଦୃଶ୍ୟ ଏବେବି ମୋର ମନେ ପଡ଼ିଲେ ଆଖିରେ ଲୁହ ଆସେ ।
ନିଜ ହାତରେ ଜୀବନକୁ ତିଳ ତିଳ କରି ନଷ୍ଟ କରିଦେବା କି
କଷ୍ଟ ହୋଇ ନ ଥିବ । ଅଳ୍ପ ଦୂରରେ ଦୁଇଖଣ୍ଡି ଧଳା କାଗଜ
ଭଙ୍ଗାହୋଇ ଥୁଆ ହୋଇଥାଏ । ତା ଉପରେ ଗୋଟିଏ ଗ୍ରେଟ
ଇଟା ରଖା ଯାଇଥାଏ, ଯେପରି କି କାଗଜ ଦୁଇଖଣ୍ଡି ପବନରେ
ଉଡ଼ି ନଯାଏ । ତରବର ହୋଇ ଇଟାଟି ଉଠାଇ କାଗଜ
ଦୁଇଖଣ୍ଡି ଆଣି ଦେଖିଲି ଯେ କାଗଜ ନୁହେଁ, ଦୁଇଖଣ୍ଡି ଚିଠି ।
ଚିଠି ଦୁଇଟି ଲେଖିଥିଲେ ସେହି ମୃତ ବ୍ୟକ୍ତି । ଖଣ୍ଡିଏ ଚିଠି ତାଙ୍କ
ଧର୍ମ ପତ୍ନୀଙ୍କ ନିକଟକୁ ଲେଖା ଯାଇଥିଲା ଓ ଅନ୍ୟଟି ଏକ ସମ୍ବାଦ
ପତ୍ରର ସମ୍ପାଦକଙ୍କ ନିକଟକୁ । ସେହି ଚିଠିରୁ ମୁଁ ଜାଣିଲି ଯେ
ମୃତ ବ୍ୟକ୍ତି ହେଉଛନ୍ତି ଜଣେ ପି.ଡବଲ୍ୟୁ.ଡ଼ି. ଓଭରସିଅର ।
ତାଙ୍କ ପ୍ରତି ଯାହା ସବୁ ଅନ୍ୟାୟ ଅତ୍ୟାଚାର ଉଚ୍ଚ କର୍ତ୍ତୃପକ୍ଷ
କରିଥିଲେ, ତାହା ସମସ୍ତ ସେ ଚିଠିରେ ବର୍ଣ୍ଣନା କରିଥିଲେ ।
ସେ ତ ଚିଠି ନୁହେଁ, ଗୋଟିଏ ନିର୍ଯ୍ୟାତିତ ଜୀବନର କରୁଣ
ଇତିହାସ । ସେ ଚିଠିଟି ଖବର କାଗଜମାନଙ୍କରେ ପ୍ରକାଶିତ
ହୋଇଥିଲା, ତେଣୁ ଆପଣମାନେ ପଢ଼ିଥିବେ । ସେ ଚିଠିଟି ପଢ଼ିବା
ପରେ ଅନ୍ୟାୟ, ଅତ୍ୟାଚାରର ବିରୁଦ୍ଧରେ ମୋ ମନ ବିଦ୍ରୋହ
କରି ଉଠିଲା । ତା ପରେ ମୋ ସମ୍ମୁଖରେ ଦେଖାଦେଲା ଏକ
ଉପାୟ । ଅନ୍ୟାୟ ଅତ୍ୟାଚାରର ବିରୁଦ୍ଧରେ ସଂଗ୍ରାମ କରିବି
ବୋଲି ସେହି ମୂହୂର୍ତ୍ତରୁ ଠିକ୍ କଲି । ମୃତ ଓଭରସିଅରଙ୍କ
ଶରୀରରେ ମୋ ପୋଷାକ ପିନ୍ଧାଇ ଦେଇ ମୁଁ ଆତ୍ମହତ୍ୟା
କରିଛି ବୋଲି ଦୁଇଖଣ୍ଡି ଚିଠି ଲେଖି ଦେଲି । ଓଭରସିଅରଙ୍କ

Digitized by srujanika@gmail.com

ମସ୍ତକଟିକୁ ଧଡ଼ପୃଷ୍ଠରୁ ବିଚ୍ଛିନ୍ନ କରି ଦେଲି । ତା ପରେ ମୁଁ ବଞ୍ଚି ରହିଲି । କିନ୍ତୁ ପୃଥିବୀରେ ସମସ୍ତେ ଜାଣିଲେ ମୋର ମୃତ୍ୟୁ ଘଟିଛି ।

ସ୍ୱପ୍ନା ଦେବୀଙ୍କୁ ଗୋଟିଏ ଚିଠି ଲେଖି ଜଣାଇଦେଲି ଯେ ସେ ବିବାହ କରିବେନି । ଗବେଷଣା କରିବେ । ମୋର ଯାହା ସବୁ ଟଙ୍କା ସରକାରଙ୍କଠାରୁ ପାଇବାର ଥିଲା, ସେ ସବୁ ସ୍ୱପ୍ନା-ଦେବୀ ପାଇବେ ବୋଲି ସରକାରଙ୍କ ପାଖକୁ ଲେଖି ଜଣାଇ-ଦେଲି । ମୋର ସମସ୍ତ ବହିପତ୍ର, ଗବେଷଣା ଜିନିଷପତ୍ର ସ୍ୱପ୍ନା-ଦେବୀ ଗ୍ରହଣ କରିବେ ବୋଲି ଜଣାଇଥିଲି । ମୋର ଯାହା କିଛି ଥିଲା, ସେ ସମସ୍ତ ଗ୍ରହଣ କରିବାକୁ ସ୍ୱପ୍ନାଦେବୀଙ୍କୁ ଅନୁରୋଧ କରିଥିଲି । ମୋର ଇଚ୍ଛାଥିଲା, ଗୋଟିଏ ଗବେଷଣାଗାର ଗଢ଼ିବାକୁ । ସେ ଇଚ୍ଛାଟି ସ୍ୱପ୍ନାଦେବୀଙ୍କୁ ଜଣାଇଥିଲି । ସ୍ୱପ୍ନାଦେବୀ ଅନ୍ତତଃ ମୋର ସେହି କଳ୍ପନା ସୌଧକୁ ବାସ୍ତବରେ ରୂପଦେବେ । ସ୍ୱପ୍ନାଦେବୀଙ୍କ ଉଚ୍ଚକୋଟୀର ଗବେଷଣା, କର୍ତ୍ତବ୍ୟନିଷ୍ଠା ଓ ତାଙ୍କ ସଞ୍ଚରିତ୍ର ଆଦର୍ଶରେ ମୁଁ ମୁଗ୍ଧ ହୋଇଥିଲି । ତେଣୁ ତାଙ୍କୁ ମୁଁ ବିବାହ ନ କରିବାକୁ ଅନୁରୋଧ କରିଥିଲି । କାରଣ ମୁଁ ଜାଣିଥିଲି ଯେ ସ୍ୱପ୍ନାଦେବୀ ଯଦି ବିବାହ କରନ୍ତି, ତେବେ ଗବେଷଣାରୁ ଦୂରେଇ ଯିବେ । ସେ ତାଙ୍କ ସଂସାର ଜଂଜାଳ ଭିତରେ ନିଜକୁ ଭୁଲିଯିବେ । ଗବେଷଣା ପଛରେ ପଡ଼ିରହିବ । ସ୍ୱପ୍ନା ଦେବୀ ହେବେ ଗୃହିଣୀ । କିନ୍ତୁ ସ୍ୱପ୍ନାଦେବୀଙ୍କ ପରି ଯଦି ଗୋଟିଏ ଝିଅ ନିଜ ଘରୋଇ ସଂସାରରେ ବ୍ୟସ୍ତ ରହେ, ତେବେ ଓଡ଼ିଶାରେ ଉଚ୍ଚକୋଟୀର ଗବେଷଣା କରିବ କିଏ ? ତେଣୁ ସ୍ୱପ୍ନାଦେବୀଙ୍କ ପାଖକୁ ଲେଖିଥିଲି ଯେ ତାଙ୍କୁ ବିବାହ କରିବାକୁ

Digitized by srujanika@gmail.com

ମୋର ଇଚ୍ଛାଥିଲା, ତେଣୁ ସେ ଅଉ ଅନ୍ୟ କାହାକୁ ବିବାହ ନକରି ଚିର କୁମାରୀ ରହିବେ । ତେବେ ମୋର ଧାରଣା ନଥିଲା ଯେ ମୋର ଦୁଇ ଗୃହଧାଡ଼ି ଲେଖାରେ ସ୍ୱପ୍ନାଦେବୀ ଚିରକୁମାରୀ ରହିବାକୁ ପ୍ରତିଜ୍ଞାବଦ୍ଧ ହେବେ । ଯୁଗ ଭିତରେ ଘର୍ଘଦିନ ଅତୀତ ହୋଇଯାଇଥିଲେ ମଧ୍ୟ ସ୍ୱପ୍ନାଦେବୀ ତାଙ୍କ ପ୍ରତିଜ୍ଞାରେ ଅଟଳ ରହି ଓ ମୋର ସେହି ଦୁଇଧାଡ଼ି ଲେଖାକୁ ମନ ଭିତରେ ରଖି ଆଜି ପର୍ଯ୍ୟନ୍ତ ବିବାହ କରି ନାହାଁନ୍ତି । ସ୍ୱପ୍ନାଦେବୀ ଭୁଲି ଯାଇଛନ୍ତି ନିଜକୁ କର୍ମ ତତ୍ପରତା ଭିତରେ । ଆମ ସମାଜରେ ଯଦି ସ୍ୱପ୍ନାଦେବୀଙ୍କ ପରି କେତେଜଣ ନାରୀ ବୈଜ୍ଞାନିକ ବାହାରନ୍ତେ, ତେବେ ଆମ ଦେଶ ବିଜ୍ଞାନରେ ବହୁତ ଉନ୍ନତ ହୁଅନ୍ତା । ଆମ ସମାଜରେ ସ୍ୱପ୍ନାଦେବୀ ହେଉଛନ୍ତି ଏକ ଆଦର୍ଶ ନାରୀ ।

ଏ ମିଶ୍ର ଇନ୍‌ଷ୍ଟିଚ୍ୟୁଟ ଆରମ୍ଭ ହେବାର କେତେଦିନ ପରେ ମୁଁ ଆସି ଏଠାରେ ଚାକିରୀ କଲି । ଚାକିରୀ କରିବାର ଅନେକ ଦିନ ପର୍ଯ୍ୟନ୍ତ ସ୍ୱପ୍ନାଦେବୀ ମୋତେ ଚିହ୍ନି ନଥିଲେ । ମୁଁ ମୋ ପରିଚୟ ସ୍ୱପ୍ନାଦେବୀଙ୍କୁ ଜଣାଇ ନଥିଲି । କିନ୍ତୁ କେତେଦିନ ପରେ ସ୍ୱପ୍ନାଦେବୀଙ୍କୁ ମୋର ପରିଚୟ ଦେବା ପାଇଁ ମୋ ବିବେକ ମୋତେ ବାଧ୍ୟ କଲା । ସ୍ୱପ୍ନାଦେବୀଙ୍କୁ ମୋର ଅତୀତର ଇତିହାସ ଜଣାଇଲି । ଏତେଦିନ ପରେ ସ୍ୱପ୍ନାଦେବୀଙ୍କୁ ମୁଁ ମୋର ପରିଚୟ କାହିଁକି ଦେଲି, ସେ କଥା ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହେବେ । ତେବେ ସ୍ୱପ୍ନାଦେବୀଙ୍କୁ ମୁଁ ଯଦି ଆଗରୁ ପରିଚୟ ଦେଇ ନଥାନ୍ତି, ତେବେ ଆଜି ବୋଧହୁଏ 'ଡକ୍ଟର ମିଶ୍ର' ବୋଲି ଚିହ୍ନାଇବାକୁ ସୁଧାଂଶୁ ବାବୁ ସକ୍ଷମ ହୋଇ ନଥାନ୍ତେ ।

Digitized by srujanika@gmail.com

ତେବେ ମୁଁ ସ୍ୱପ୍ନାଦେବୀଙ୍କୁ ପରିଚୟ ଦେବାକୁ ବାଧ୍ୟ ହେଲି । ତାର ଏକ ବଡ଼ କାରଣ ହେଉଛନ୍ତି ଏହି ମହାମାନ୍ୟ ସୁଧାଂଶୁବାବୁ ଯିଏକି ଆଇ.ଜି. ସାହେବଙ୍କ ନିକଟରେ ସାଧୁପୁରୁଷ ସାଜି ମୋତେ ଅପରାଧୀ, ବୋଲି ପ୍ରମାଣିତ କରୁଛନ୍ତି । ପ୍ରକୃତରେ କିନ୍ତୁ ସୁଧାଂଶୁ ବାବୁ ସାଧୁପୁରୁଷ ନୁହଁନ୍ତି । ଗୋଟିଏ ଭୟଙ୍କର ବିଷଧର ସର୍ପ ।

ଏତିକି ସୁମନ୍ତବାବୁ, ଓରଫ ଓଙ୍କାର ମିଶ୍ର କହିବା ମାତ୍ରେ ସୁଧାଂଶୁ ବାବୁଙ୍କ ମୁହଁରେ ଏକ ଅନ୍ଧକାରିଆ କଳା ବଉଦ ଛାଇଁ ଆସିଲା । ସୁଧାଂଶୁ ବାବୁଙ୍କର ମୁହଁ ଶୁଖିଯିବା କାହାର ଆଖିକୁ ଏଡ଼ାଇ ପାରିଲାନି ।

ତାପରେ ସୁମନ୍ତ ବାବୁ ପୁଣି କହିଲେ ସୁଧାଂଶୁ ବାବୁ ଯେଉଁ ଦିନଠାରୁ ମୋତେ ସନ୍ଦେହ କଲେ, ତାର ବହୁତ ପୂର୍ବରୁ ତାଙ୍କ ପଛରେ ମୋର ସନ୍ଦେହୀ ଚକ୍ଷୁ ଘୂରି ବୁଲୁଥିଲା । ସେ ମୋ ବିଷୟରେ ଅନୁସନ୍ଧାନ ହୋଇ ଯାହା ସବୁ ପ୍ରମାଣ ସଂଗ୍ରହ କରୁଥିଲେ, ସେ ସମସ୍ତ ମୁଁ ଜାଣିପାରି ଥିଲି ଓ ତାଙ୍କର ପ୍ରତି କାର୍ଯ୍ୟ ପ୍ରତି ସତର୍କ ଦୃଷ୍ଟି ରଖିଥିଲି । ତାର କାରଣ କଣ ଜାଣନ୍ତି ? ସେ ସମସ୍ତ ଘଟଣା ଜଣାଇବା ପୂର୍ବରୁ ଆଇ, ଜି, ସାହେବ ଓ ଏଠାରେ ସମସ୍ତ ବ୍ୟକ୍ତିଙ୍କ ସମ୍ମୁଖରେ ମୁଁ ନିର୍ଭୀକ ଢଙ୍ଗରେ କହୁଛି ଯେ ସୁଧାଂଶୁ ବାବୁ ପ୍ରକୃତରେ ମିଶ୍ର ଇନଷ୍ଟିଚ୍ୟୁଟକୁ ଗବେଷଣା କରିବାକୁ ଆସିନଥିଲେକି ସେ ଭାରତୀୟ ନୁହଁନ୍ତି । ସେ ହେଉଛନ୍ତି ପାକିସ୍ଥାନର ଗୁପ୍ତଚର । ତାଙ୍କର ପ୍ରକୃତ ନାମ ହେଉଛି ସଫୁଦରହମ ଖାଁ । ସୁମନ୍ତ ବାବୁଙ୍କ ପାଟିରୁ ଏହି ଶବ୍ଦଟି ଶୁଣିବା ମାତ୍ରେକେ ସୁଧାଂଶୁ ବାବୁ ପାଟି ପାଖକୁ ହାତ ନେଇଥିଲେ ।

Digitized by srujanika@gmail.com

କିନ୍ତୁ ହଠାତ୍ ସୁଧାଂଶୁ ବାବୁଙ୍କ ହାତଟି ତାଙ୍କ ପାଟି ପାଖରେ ଅଟକି ଗଲା । ସେ ନିସ୍ତେଜ ହୋଇ ପଡ଼ିଲେ । ସୁମନ୍ତ ବାବୁ ପାଟି କରି କହି ଉଠିଲେ, କଣ ସୁଧାଂଶୁ ବାବୁ, ଆପଣ ଧରାପଡ଼ିଗଲେ ବୋଲି ଆତ୍ମହତ୍ୟା କରୁଛନ୍ତି ? ଅପରାଧୀକୁ ଧରାଇବାକୁ ଯାଇ ଆଜି ଆପଣ ଧରା ପଡ଼ିଲେ । ଦେଖନ୍ତୁ ଆଇ. ଜି. ସାହେବ, ସୁଧାଂଶୁ ବାବୁ କାହିଁକି ପାଟି ପାଖକୁ ହାତ ନେଉଥିଲେ । ସେ ଯେତେବେଳେ ଜାଣିଲେ ଯେ ତାଙ୍କର ଅସଲ ରୂପ ଧରା ପଡ଼ିଗଲାଣି, ଆଉ ମଧ୍ୟ ପ୍ରମାଣର ଅଭାବ ନାହିଁ । ତେଣୁ ସେ ତରବର ହୋଇ ଆତ୍ମହତ୍ୟା କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ବଡ଼ ଦୁଃଖର କଥା ଯେ ହାତଟି ତାଙ୍କର ପାଟି ପାଖରେ ଅଟକି ଯାଇଛି । ଆପଣ ସୁଧାଂଶୁ ବାବୁଙ୍କ ହାତ ଦେଖନ୍ତୁ ଗୋଟିଏ ଗ୍ଲେଟ ଶିଶି ରହିଛି ଓ ସେ ଶିଶିଟି ଭିତରେ ନିଶ୍ଚୟ ଉତ୍କଟ ବିଷ ଭରି ରହିଛି । ଆପଣ ଶିଶିଟିକୁ ପରୀକ୍ଷା ପାଇଁ ପଠାନ୍ତୁ, ଜାଣିପାରିବେ ।

ଆଇ.ଜି. ସାହେବ ସୁଧାଂଶୁ ବାବୁଙ୍କ ହାତରୁ ଗ୍ଲେଟଶିଶିଟି ବାହାର କରି ଆଣିଲେ । ସୁମନ୍ତ ବାବୁଙ୍କୁ ଚାହିଁ ହସି ପଚାରିଲେ ଆପଣ ସୁଧାଂଶୁ ବାବୁ ଗୁପ୍ତଚର ବୋଲି କିପରି ଜାଣିଲେ ?

ହଁ ସେ କଥା ଆପଣଙ୍କୁ ନ କହିଲେ ଆପଣ ଜାଣିବେ କିପରି ? କହୁଛି ଶୁଣନ୍ତୁ ।

ମୁଁ ମିଶ୍ର ଇନ୍‌ଷ୍ଟିଚ୍ୟୁଟ୍‌ରେ ରହିବାର ଅଳ୍ପ କେତେଦିନ ପୂର୍ବରୁ ସୁଧାଂଶୁବାବୁ ଆସିଥାଆନ୍ତି । ମୁଁ ଦେଖୁଥାଏ ଯେ ସେ ପଢାପଢ଼ିର

Digitized by srujanika@gmail.com

ଧୀର ଧୀରନ୍ତନ । କେମିତି ସ୍ୱପ୍ନା ଦେବୀଙ୍କ ସହିତ ଭଲ ସମ୍ପର୍କ ସ୍ଥାପନ କରିବେ, ସେଇ ସୁବିଧା ଖୋଜୁଥାନ୍ତି । ଡେଲଟା ରଶ୍ମିରେ ସେ ଗବେଷଣା କରିବାକୁ ଆସିଛନ୍ତି । ମୁଁ ଜାଣିଥାଏ । ଡେଲ୍‌ଟା ରଶ୍ମି କଣ, ବାଣେଷଣାଗାରରେ ଜାଣିବାକୁ ହେଲେ ବହୁତ ପଢ଼ିବା ଦରକାର କିନ୍ତୁ ତାଙ୍କର ଚନ୍ଦ୍ରାଧାର ସେପରି ଥିଲାପରି ଜଣା ପଡ଼ୁନଥାଏ ସେ କେବଳ ସ୍ୱପ୍ନା ଦେବୀଙ୍କ ସହିତ ମିଶି ଷଣ୍ଢାଗାରରେ ପ୍ରକୃତରେ କିପରି ଡେଲଟା ରଶ୍ମି ବାହାରି ପାରିବ ସେହି ବିଷୟ ଜାଣିବାକୁ ଉଦ୍‌ବିଗ୍ନ ହେଉଥାନ୍ତି । ସେହିଠାରୁ ମୋର ପ୍ରଥମ ସନ୍ଦେହ ଆରମ୍ଭ ହୋଇଛି । କାରଣ ମୁଁ ଡେଲ୍‌ଟା ରଶ୍ମି ବାହାର କରି ଜାଣିଛି ଯେ, ଡେଲ୍‌ଟା ରଶ୍ମି ସାହାଯ୍ୟରେ ବିନା ରକ୍ତପାତରେ ଶତ୍ରୁକୁ ଜୟ କରିହେବ, ତେଣୁ ମୋର ସନ୍ଦେହ ହେଲା । ଡେଲ୍‌ଟାରଶ୍ମି ଉପରେ ମୁଁ ଯେଉଁ ଗାଣିତିକ ତଥ୍ୟ ଲେଖିଛି, ସୁଧାଂଶୁ ବାବୁ ସେଥିରୁ ଜାଣିପାରିଛନ୍ତି ଡେଲ୍‌ଟା ରଶ୍ମିର ଶକ୍ତି । ସେ ଗାଣିତିକ ତଥ୍ୟ ଉପରେ ମୋର ନାମ ଓ ସ୍ୱପ୍ନାଦେବୀଙ୍କର ନାମଥିଲା ତେଣୁ ସେ ଯେତେବେଳେ ଜାଣିଲେ ଯେ ମୋର ମୃତ୍ୟୁ ଘଟିଛି ଓ ସ୍ୱପ୍ନାଦେବୀ ମିଶ୍ର ଇନ୍‌ଷ୍ଟିଚ୍ୟୁଟ୍‌ର ଡିରେକ୍‌ଟର ଅଛନ୍ତି, ସେତେବେଳେ ସୁଧାଂଶୁ ବାବୁ ଭାବିଲେ ଓଡ଼ିଶା ଆସି ମିଶ୍ର ଇନ୍‌ଷ୍ଟିଚ୍ୟୁଟ୍‌ରେ ରହି ଡେଲ୍‌ଟା ରଶ୍ମିକୁ ପ୍ରକୃତରେ କିପରି ପାଇବାକୁ ହେବ, ଜାଣିପାରିବେ । ସେଥିପାଇଁ ସେ ସୁଦୂର ପାକସ୍ଥାନରୁ ଦୌଡ଼ି ଆସିଥିଲେ । ସୁଧାଂଶୁ ବାବୁଙ୍କର ଆଶାଥିଲା ସେ ସ୍ୱପ୍ନାଦେବୀ ନିଶ୍ଚୟ ଡେଲ୍‌ଟା ରଶ୍ମିକୁ ପ୍ରକୃତରେ ପାଇବା ପାଇଁ ଚେଷ୍ଟା କରୁଥିବେ । ମୋର ସୁଧାଂଶୁ ବାବୁଙ୍କ ଉପରେ ସନ୍ଦେହ ହେବା ପରେ ମୁଁ ସ୍ୱପ୍ନାଦେବୀଙ୍କୁ ମୋର

Digitized by srujanika@gmail.com

ପରିଚୟ ଦେଇ ଅଣ୍ଡାଚର ଘଟଣା ସମସ୍ତ ଜଣାଇଥିଲି ଓ ସୁଧାଂଶୁ ବାବୁଙ୍କୁ ଡେଲ୍‌ଟା ଉଣି ବିଷୟରେ କିଛି ନଜଣାଇବାକୁ ସତର୍କ କରି ଦେଇଥିଲି । ଦିନେ ସ୍ୱପ୍ନା ଦେବୀ ନଥିବା ସମୟରେ ସୁଧାଂଶୁ ବାବୁ ଡେଲଟା ଉଣି ବିଷୟରେ କାଗଜପତ୍ର ଦେଖିବାକୁ ଚାହିଁଲେ । କିନ୍ତୁ ମୁଁ ଦେଖିବାକୁ ଦେଇନାହିଁ । ତା ପରେ ମୋ ଉପରେ ସୁଧାଂଶୁ ବାବୁଙ୍କର ସନ୍ଦେହ ହୋଇଛି । ସେ ମୋ ଖବର ସଂଗ୍ରହ କରିବାରେ ଲାଗିଛନ୍ତି । ମୁଁ ମଧ୍ୟ ତା ପରଠାରୁ ତାଙ୍କର ଠିକ୍‌ନଖି ଖବର ରଖିଛି । ଦିନେ ସେ ନଥିବା ସମୟରେ ମୁଁ ତାଙ୍କ ଘରକୁ ଯାଇଥିଲି । ତାଙ୍କ ଘରେ ଯାହା ସବୁ ଦେଖି ଆସିଛି, ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହେବେ । ତାଙ୍କ ଘରେ ଗୋଟିଏ ରେଡିଓ ଟ୍ରାନ୍‌ସମିଟର ଅଛି, ଯାହା ଦ୍ୱାରା କି ସେ ଆମ ଦେଶରୁ ସମସ୍ତ ଗୁପ୍ତତଥ୍ୟ ସଂଗ୍ରହ କରି ପାକିସ୍ଥାନକୁ ପଠାଉଥିଲେ । ତାଙ୍କ ଘରର କାଗଜପତ୍ରରୁ ତାଙ୍କର ଠିକଣା ଜାଣିପାରିଥିଲି । ତାଙ୍କର ଅଡ୍ଡ ଭେଟୋଟି ଜାଗାରେ କେତେଜଣ ଗୁପ୍ତଚର ବନ୍ଧୁ ଅଛନ୍ତି । ସେମାନଙ୍କ ଠିକଣା ମୁଁ ରଖିଛି ଆପଣଙ୍କୁ ସେମାନଙ୍କ ଠିକଣାଗୁଡ଼ିକ ଦେଉଛି, ଆପଣ ଯାଇ ସେମାନଙ୍କୁ ଅରେଷ୍ଟ କରିବେ । ଆଜି ଅଧିକା କହିବା ଅନାବଶ୍ୟକ । ଆପଣ ସୁଧାଂଶୁ ବାବୁଙ୍କ ଘର ଖାନତଲାସ କଲେ ସମସ୍ତ ଖବର ଜାଣି ପାରିବେ । ସୁଧାଂଶୁ ବାବୁଙ୍କ ଘରର ଠିକଣା ଓ ସମସ୍ତ ଜିନିଷପତ୍ରର ତାଲିକା ଲେଖି ଆପଣଙ୍କୁ ଦେଉଛି, ଆପଣ ଏହି ଲେଖା ସାହାଯ୍ୟରେ ସମସ୍ତ ଜିନିଷ ପତ୍ର ଜବତ କରନ୍ତୁ । ସୁଧାଂଶୁ ବାବୁ ପାକିସ୍ଥାନର ଗୁପ୍ତଚର । ସେ ଯଦି ମୋତେ ଧରିବାକୁ ଚେଷ୍ଟା କରି ନଥାନ୍ତେ ତେବେ ତାଙ୍କର ଅସଲ ରୂପଟି ପୋଲିସଙ୍କ ପାଖରେ ଧରାପଡ଼

Digitized by srujanika@gmail.com

ନଥାନ୍ତା ବର୍ତ୍ତମାନ ଆଉ ସୁଧାଂଶୁ ବାବୁ ଆପଣଙ୍କ ପାଖରୁ ଖସିଯିବାର ଉପାୟ ନାହିଁ । ସମସ୍ତ ପ୍ରମାଣର କାଗଜପତ୍ର ଗୁଡ଼ିକ ଏ ଫାଇଲ ଭିତରେ ଅଛି । ଏ ଫାଇଲ୍‌ଟିକୁ ଯତ୍ନ ସହକାରେ ରଖନ୍ତୁ ଆଇ.ଜି.ସାହେବ ଆପଣଙ୍କୁ ଦ୍ରୁତ ସାହାଯ୍ୟ କରିବ । ଏଥର ଶୁଣନ୍ତୁ ମୋ ଘଟଣାଗୁଡ଼ିକ ।

ଓଭରସିଅରଙ୍କର ଆତ୍ମହତ୍ୟା ପରଠାରୁ ଦେଶରେ ଅନ୍ୟାୟ, ଶୋଷଣ, ଲାଞ୍ଚ, ଦୁର୍ନୀତି କିପରି ଦୂରହେବ ସେଥିପାଇଁ ମୁଁ ସଂଗ୍ରାମ କରି ଆସିଛି । ଅପରାଧୀ ନାମରେ ଯେତେ ଟଙ୍କା ଲୁଟ୍ ହୋଇଛି ସେ ସବୁ ମୁଁ କରିଛି । କିନ୍ତୁ ଗୋଟିଏ ନୂଆ ପଇସା ମୋ ସ୍ୱାର୍ଥ ପାଇଁ ମୁଁ ଖର୍ଚ୍ଚ କରିନି । ଗରିବ ଜନତାର ସେବା ଓ ଦେଶ ମାତୃକାର ସେବାରେ ଏ ସମସ୍ତ ଅର୍ଥକୁ ମୁଁ ବ୍ୟୟ କରିଛି ! ଯେଉଁ ଟଙ୍କା ଯାହାଠାରୁ ନେଇଛି ସେ ସବୁର କାରଣ ଦର୍ଶାଇ ଚିଠି ଲେଖି ମୁଁ ନେଇଛି । କିନ୍ତୁ ସେମାନେ ସେ ଚିଠି ପୋଲିସକୁ ଦେଖାଇ ନାହାନ୍ତି କାରଣ ସେ ସତ୍ ସାହାସ ସେମାନଙ୍କର ନାହିଁ । ସେମାନେ ଯଦି ସେ ଚିଠିଗୁଡ଼ିକ ଦେଖାନ୍ତେ ତେବେ ସେମାନେ ନିଜେ ଦୋଷୀ ବୋଲି ଧରା ପଡ଼ନ୍ତେ । ମୁଁ ଯେଉଁ ଡେଲ୍ଟା ରଶ୍ମି ସୃଷ୍ଟି କରିଛି ତାହାର ପ୍ରକୃତ ଉପାୟ ଆମ ଭାରତ ସରକାରଙ୍କର ପ୍ରତିରକ୍ଷା ବିଭାଗକୁ ଜଣାଇ ଦେବ । ଏଥର ମୋର ଆଉ କିଛି କହିବାର ନାହିଁ । ଆପଣ ପ୍ରଥମେ କାହାକୁ ଆରେଷ୍ଟ କରିବେ, ମୋତେ ନା ସୁଧାଂଶୁ ମଜୁମ୍ଦାର ଓରଫ ପାକିସ୍ତାନର ଗୁପ୍ତଚର ସୟଦ ରହମ ଖାଁଙ୍କୁ ?

Digitized by srujanika@gmail.com

ସମସ୍ତେ ଏକ ଲୟରେ ଶୁଣିଁ ରହିଥାନ୍ତି ଗୋଟିଏ ଲୋକର ଉକ୍ତି ଗୁରୁକୁ । ଏହି ତେବେ କଣ ବିଖ୍ୟାତ ବୈଜ୍ଞାନିକ ଡକ୍ଟର ମିଶ୍ର ?

ହଠାତ୍ ଡକ୍ଟର ମିଶ୍ର ସମସ୍ତଙ୍କ ଭାବନାରେ ବାଧାଦେଇ କହିଲେ ଆସ, ସ୍ୱପ୍ନା ଆମେ ଯିବା । ସମାଜପାଇଁ ଆମର ଆଡୁରେ ଅନେକ କର୍ତ୍ତବ୍ୟ ବାକି ଅଛି ସେ ସମସ୍ତ କର୍ତ୍ତବ୍ୟ ସାରିଲେ ପୁଣି ଆଇ.ଜି. ସାହେବଙ୍କୁ ଦେଖା କରିବା । ବିଦାୟ ଆଇ.ଜି. ସାହେବ, ପୁଣି ଦେଖା ହେବା

ତା ପରଦିନ ଖବରକାଗଜ ସକାଳୀ ସଂସ୍କରଣରେ ହାକ ଡାକ ପଡ଼ିଥାଏ ଅପରାଧୀ ସାହାଯ୍ୟରେ ପାକିସ୍ଥାନର ଗୁପ୍ତଚର ସପ୍ତଦ ରହମ ଖାଁ ଗିରଫ ହୋଇଛି । ଅପରାଧୀ, ଓରଫ ବିଖ୍ୟାତ ବୈଜ୍ଞାନିକ ଡକ୍ଟର ମିଶ୍ର ଏବଂ ମିଶ୍ର ଇନଷ୍ଟିଚ୍ୟୁଟର ଡିରେକ୍ଟର ସ୍ୱପ୍ନାଦେବୀ ପୋଲିସ ସାହେବଙ୍କ ଆଗରୁ ଅନ୍ତର୍ଦ୍ଧାନ……

ସାରା ସହରରେ ଚହଳ ପଡ଼ିଯାଇଛି ଅଦ୍ଭୁତ ସେ ଅପରାଧୀ ।

—( ସମାପ୍ତ )—

Digitized by srujanika@gmail.com